# ଉତ୍ସର୍ଗ

## ଶ୍ରୀଯୁକ୍ତ ହରିଶ୍ଚନ୍ଦ୍ର ବଡ଼ାଳ
## କରକମଳେଷୁ,

ହୋଇନାହିଁ ଏ ଯାବତ ନେତ୍ର-ପଥଗତ;
ତଥାପି ନମଇ ମାନ୍ୟ କବିର ହୃଦୟ,
ହେ ମହାନ, ତବ-ଶୁଭ୍ର-ମୂର୍ତ୍ତି-ବେଦୀ ତଳେ
ପ୍ରଶଂସା-ମୁକୁଳ-ରାଶ ଲେପି ତଥି ପରେ।
ଜୀବନଟା ଯାର ଏକ ଦୀର୍ଘ ଚିତାନଳ,
ତା'ଙ୍କରେ ଅର୍ପିବ କାହୁଁ ଭେଟିର ସମ୍ବଳ।
ତୁମେ କିନ୍ତୁ ଗୁଣଗ୍ରାହୀ—ଅଛୁ ନା କି ମନେ,
ସାନ୍ତ୍ୱନାର ବାରି ଢାଳି ସେ ଯେଉଁ ଲଗନେ,
ଥିଲ ଚେଷ୍ଟି ଲିଭାଇବା ଚିତା ଏ ଦୀନର,
ଭୁଲି କି ପାରିବି ସ୍ମୃତି ସେ ମହାଶୟର ?
କିନ୍ତୁ ନାହିଁ ଭେଟିବାକୁ ତୁମ୍ଭର ସମୀପ,
ନେବ କି ଏ ଚିତାନଳ-ନିର୍ମିତ ପ୍ରଦୀପ ?

ଆପଣଙ୍କର
ଗୁଣମୁଗ୍ଧ
**ମାୟାଧର ମାନସିଂ**

# ଭୂମିକା

'ଜୀବନଚିତା' ଭିନ୍ନ ଭିନ୍ନ ସମୟରେ ଲିଖିତ ଓ ପ୍ରକାଶିତ ଏକ ଶ୍ରେଣୀସ୍ଥ କବିତାମାନଙ୍କର ସଂଗ୍ରହ । ଚିତାନଳ ଯେପରି ମୃତ ଦେହ, ବସ୍ତ୍ର ଓ ବହୁ ଇନ୍ଧନ ଖଣ୍ଡକୁ ଏକ ରୁଦ୍ର ଓ କରୁଣ ଅଲୋକରେ ଏକୀଭୂତ କରିଦିଏ, ମୋର କ୍ଷୁଦ୍ର ଜୀବନର ମର୍ମନ୍ତୁଦ ଇତିହାସ ସେହିପରି ଏହି ବିଭିନ୍ନ କବିତା-ମାନଙ୍କୁ ଏକପ୍ରକାର ବର୍ଣ-ସାମ୍ୟ ଦେଇ ପାରିଛି ବୋଲି ମୋର ବିଶ୍ୱାସ । ସେହି ସାମ୍ୟ ଦୁଃଖ ଓ ବିଳାପର ସାମ୍ୟ । ତା'ଭିତରେ ଯଦି କିଛି ଅଲୋକ ବା ଉତ୍ତାପ ଥାଏ, ତେବେ ତାହା ଚିତାର ଅଲୋକ ବା ଉତ୍ତାପ ପରି । ତେଣୁହିଁ ପୁସ୍ତକର ନାମ 'ଜୀବନ ଚିତା'

—ଲେଖକ—

# ସୂଚୀ

| ବିଷୟ | ପୃଷ୍ଠା |
|---|---|


---

# କବିର ପୁରସ୍କାର

ପଲ୍ଲୀଗ୍ରାମେ ଥାଇ ବଙ୍ଗକବି କୃତ୍ତିବାସ
ଶୁଣିଲେ ବଙ୍ଗଳା ରାଜା ସନ୍ତୋଷ ପ୍ରକାଶ
କରୁଛନ୍ତି ତାଙ୍କ-ସୃଷ୍ଟ ନବ ରାମାୟଣେ,
ମାଧ୍ୟ-ବିନୋଦନ ହୁଏ ତାର ଅଙ୍ଗଲଗନେ ।

ଶୁଣି ତା ଗ୍ରାମରୁ କରି ବାହାରିଲେ ଥରେ
ଗୌଡ଼ ରାଜଧାନୀ ପ୍ରତି । ରାଜସିଂହଦ୍ୱାରେ
ଯେବେ ସେ ମିଳିଲେ ଯାଇ, ସ୍ୱିନ୍ନ, ଅବସନ୍ନ
ଚାଳିଲେ ତାହାଙ୍କ ପ୍ରତି ଉର୍ଦ୍ଧିତ-ନୟନ

ରାଜ ଅନୁଚରବର୍ଗ—କହିଲେ ସକଳେ
'ନିଶ୍ଚିନ୍ତ ରହିବ ରାଜ-ଅନୁଗ୍ରହ ତଳେ
ଏ ଥର ଏ ଦୀନ ବିପ୍ର'—ଶୁଣି କୃତ୍ତିବାସ
କହିଲେ ଫୁଟାଇ ମନ୍ଦେ ବିନସ୍ମିତ-ହାସ

"ମୋହର ନୃପତି ପାଶେ ନାହିଁଟି ଯାଚନା
ଅର୍ଥ, ମାନ, ଅନୁଗ୍ରହ । ମୋ କୃତ ରଚନା
କେମନ୍ତେ ଗଉଡ଼ ରାଜା କରନ୍ତି ଆଦର
ତା' କେବଳ ଦେଖିବାର ଜିଜ୍ଞାସା ମୋହର ।"

# ବୀଣା-ଭିକ୍ଷା

ଗାଇବା ଇଚ୍ଛା ଯଦ ଦେଲ ହେ ପ୍ରଭୁ ମତେ
ବାଇବା ପାଇଁ ବୀଣା ଦଅ ଏ ମୋର ହସ୍ତେ ।

ପାଗଳ ଘନ-ସ୍ୱତ-ଅଙ୍ଗୁଳସ୍ନାନ-ଗୀତ
ପ୍ରାଣେ ମୋ ଉପୁଜାଏ ବିପୁଳ ଗାନ-ପ୍ରୀତ,
ନ ଥାଏ ନ ଥାଏ ଗୋ କୁଟୀରେ ବୀଣା ମୋର
ଧ୍ୱନାଇଦଏ ଯତ ଶ୍ରାବଣ ଘନ-ଘୋର
ହତାଶ ପର 'ସଖା, ହତାଶ ପର ସତେ !
ଦେଇନା ମତେ ବୀଣା ଯେଣୁ ହେ ମୋର ହସ୍ତେ ।

ଜ୍ୟୋଛନା ମୋ ଅଗଣା ଶୋଭନା କରି ଆସେ
ମଲ୍ଲି ଫୁଟି ଉଠେ, ବକୁଳ ଛୁଟେ ବାସେ,
ଆକୁଳ ସହକାରେ ଦୁକୂଳ ପରି ଘେରି
ଶୁକଳ କଉମୁଦୀ, ମଳୟେ ନାଚେ ଥରି;

କାମିନୀ ଯୂଥୀ ନାଚେ, ନାଚଇ ମାଧବିକା
ଲାଗଇ ଶୋଭ୍ର-ପୁରେ ପ୍ରମୋଦ କଣିକା;
ସେ ପରସାଦ-ସ୍ୱାଦ, ଅତନ୍ତ୍ର ଦେଇ ଢାଳି
ଗାଇବା ଘୋର ଆଶା ପରାଣେ ଦେଇ ଜାଳି,
ବାଇବା ପାଇଁ ବୀଣା, ଦେଇ ନା କପାଁ କହ
ବ୍ୟର୍ଥ ଅଭିଳାଷ ପୋଡ଼ଇ ଅହରହ ।

# ତରୁଣ କବିର ଆଶା

ଏଡ଼େ ବସନ୍ତ ସେ, ପାଏ କି ଭାଷା,
ଧାଏଁ ରେ ତରୁଣ କବିର ଆଶା !

ଭାବିଥିଲି ଯିବି ଅସୀମ ପଥେ
ସୁରଭି-ଶୀତଳ-ମଳୟ-ରଥେ
କୁସୁମ-ଫଗୁଲ-ଫଗୁଣ ପୁରେ
ବାହି ଗୋ ଦୂରେ !

ଅଶୋକକଳିକା ଶ୍ରବଣେ ଗୁଞ୍ଜି
ଚରମେ ଝୁଲାଇ ବକୁଳ-ପୁଞ୍ଜି
ପରିମଳ ପଥ ଯାଆନ୍ତି ମିଶି
ମୁଁ ଦଶଦିଶି ।

ପରିମଳ ମମ ଗଗନେ ଭାସି
ପାଗଳ କରନ୍ତି ଜୋଛନାରାଶି,
ଜୋଛନା ଡାକନ୍ତି 'ଆସ ହେ ପ୍ରିୟ,
ଚୁମ୍ବନ ନିଅ !'

## ଜୀବନ ଗଥା

ଚଇତ-ପବନ ସଙ୍ଗୀତ ଧରି
ସେ ପାରି ଅକାଶେ ଯାଆନ୍ତି ଚଳି,
ମୁକତି ଲଭନ୍ତା ପରାଣ ମମ
ବିହଗ ସମ !

କୋକିଳ ଡାକନ୍ତା 'ଅସ ହେ ଭ୍ରର'
ତରୁଣୀ ସେ କବି ହୁଅନ୍ତା ବାଇ,
ଗୋଲାପ କହନ୍ତା 'ଅସିଲ ସତେ
ଏତେ ଦିନକେ !'

ଭାବିଥିଲି ଘନ ବକୁଳ ତଳେ
ସୁରଭି କୁସୁମଶୟନ ପରେ
ଯାପିବି ଜୀବନ ପ୍ରେୟସୀ ଧରି
ସ୍ୱପନ ପରି !

ବାଛି ନେଇଥିଲି ମୋର ପ୍ରେୟସୀ
ଲାବଣ୍ୟ ପ୍ରତିମା, ସମବୟସୀ,
ଭାବିଥିଲି ତାରେ କରିବି ସାଥୀ
ପରାଣ ପାତି !

ଭୁବଥିଲ ଘୁଢ଼ ପୃଥିବୀ ବାଧା
ପୂଜିବ ସେ ମୋର ହୃଦୟ-ରାଧା
ବଜାଇ ମୁରଲୀ ମୁଁ ଅହରହ,
ତାହିଁ ବିବଦ ?

ଅମର ବୃନ୍ଦା ଯାମିନୀ ଛଳେ
ସେ ରାଧା କୋମଳ ଜଘନପଟେ
ଜୀବନ ମରଣ ଯାଆନ୍ତି ଭୁଲି
ସପନ ଘଟ ।

ରଜନୀ ଛଟିନୀ ଟେବତସ ଗେନେ
ଢାଳି ଦେଇଥାନ୍ତି ଅଳସ ଦେହେ,
ଚମକନ୍ତି ଶୁଣି ନୁପୁରଧ୍ୱନି
ପ୍ରେୟସୀମଣି ।

ମାନସୀ ଅପ୍ସରା ଦୋଳାଇ ବେଣୀ
ଚଉରେ ଚଳାଇ ନୟନ ବେନି,
ଲଗାଇ ଦଅନ୍ତି ହିୟରେ ଛାଉ
କୁସୁମ ହାର ।

## ଜୀବନ ଗୀତା

ପ୍ରାଣରେ ଥାଅନ୍ତା ରସ କବିତା
ଶର-ଯଭ୍ବନ ପ୍ରଣୟ-ଗୀତା
ପ୍ରେୟସୀ ଗାଅନ୍ତା, ଚୁମନ୍ତ୍ର ମୁଖ,
ପୂରନ୍ତା ଭୂକ !

ହାଇ ରେ ତରୁଣ କବିର ଆଶା
ଏଡ଼େ ବିରାଟ ସେ,ପାଏ କି ଭାଷା,
ଆକାଶ ବସୁଧା କେତେ ସେ କରେ
ନିମିଷକରେ !

କାହିଁ କଲପନା କାହିଁ ଜୀବନ,
ତରୁଣୀ କବିର ଜାନଇ ମନ.
ଗୃହଅନ୍ତୁ ବାଜେ ଦାରୁଣ ବାଧା,
କାହିଁ ତା ସଧା !

ନାହିଁ ରାଧା, ନାହିଁ ବେତସ-ଲୀଳା,
ନାହିଁ ପାଟଣ ବେଣୀହଲ୍ଲ ଛଇଳା,
ପ୍ରଣୟରେ ମାତ ହେବାକୁ ଗେଲ'
କାହିଁ ତା ବେଳ !

## ଜୀବନ ଗତି

ବାଲୁଘର ସାଥୀ ନାହିଁ ତା ପାଶେ,
ବାଳିକା ସେ ଗଳ୍ପ ଅନର ଅଶେ,
କାହା ଗଲେ ସୁଖେ ଛନ୍ଦବ ବାହୁ
କହ ସେ ଅଜ ?

ରସିକ ହେବାର ଗୁଡ଼ୁଛୁ ଅଣ,
କେ ବାଳା ବାନ୍ଧଇ ପ୍ରଣୟ-ପାଶ
କେବଳହିଁ ପ୍ରାଣ-ପୀରତି ଲଭି;
ଗରବ କବି !

ଗରବ କବିରେ ସଂସାର ପିଡ଼େ,
କବିତାକୁ ଚିହ୍ନ ନାହିଁ ଏ ଭିଡ଼େ,
ଫଗୁଣ ଚଳଇ ରଙ୍ଗିତ ଅପେ,
କି ଯାଏ ଅପେ !

ପ୍ରଣୟ-କବିତା-ସ୍ୱପନ ନାହିଁ,
ନିମିଷେ ନିମିଷେ ଗଲେ ଜଳଇ,
ମଣିଷ ବେଶରେ ଯାଉଛୁ ଦ୍ରବି !
ତରୁଣୀ କବି !

ଜୀବନ ଗୀତା

ମଣିଷ ହୋଇ ତା ଏତେ ଚତୁର
ଧରିତ୍ରୀର ସକଳ ସୃଜନା ତାର,
ଏ କଳ୍ପନାକୁ ପାଏ କି ଭାଷା
ହାଏ ରେ ତରୁଣ କବିର ଆଶା ।

## ନିଦ୍ରିତ ଭଗବାନ

---

ଦେବ ଶିଶୁ ଚଳେ ନରକର ଅଭିସାରେ
ଭଗବାନ ତୁମେ ନିଦ୍ରିତ କେଉଁଠାରେ ?

୧

ନିରଞ୍ଜନ ମୁଁ ଆସିଥିଲି ମର୍ତ୍ତ
ଆନନ୍ଦ ବିତରଣେ,
ବାଣ୍ଟିବି ବୋଲି ଅମୃତ ଏହି
ପୃଥିବୀର କଣେ କଣେ ?
ଅମୃତ ଶିଶୁ ଅମୃତ ପିଇ
ଆସିଥିଲି ଧରା ତଳେ
ଦେବତାର ସୁଖ ଅଜାଡ଼ିବି ବୋଲି
ମନୁଷ୍ୟର ପଦତଳେ ?

## ଜୀବନ ଚିତା

ମନ୍ଦାକିନୀରେ ଅବଗାହିଥିଲି
ଗନ୍ଧ-ଅକୁଳ ଜଳେ
ଗନ୍ଧଚନ୍ଦନ ଭରିବାକୁ ପରା
ଧରଣୀରେ ପଲ୍କେ ପଳେ ?
ଅପୂର୍ବ ଦେହ ଅଶ୍ଳେଷ ପରା
ଅଣିଥିଲି ସାଥେ ବନ୍ଧୁ
ପରଶେ ମୋହର ସ୍ନିଗ୍ଧ ମଧୁର
କରିବାକୁ ଏଥି ମଗ୍ନ ?
ଦେବ-ମାଳା ଯେତେ, ମଙ୍ଗଳ ହାତେ
ପରଶି କପାଳ କେଶ
ପଠିଅଇ ଦେଲେ ମନ୍ତ୍ର ନିଷେକି
ମୋର ନିର୍ବାଣ ବେଶ ।
ମନ୍ତ୍ର ଭୁଲିଲି ମାନବର ଏ ଧରାରେ
ଭଗବାନ ତୁମେ ନିଦ୍ରିତ କେଉଁଠାରେ ?

୩

ପଠିଅଇ ଦେଇ ଗୃହିଲି ନାହିଁକି ଅଜ
କି ହେଲା ମୋ', ଭବ-ଦର୍ଶିତ ପଥ ବାହୁ ।

ବନ୍ଧୁଲ ଚାହିଁ ହେ କୁହେଳି ଅନ୍ତରାଳ
ଡାକିବ ବୋଲି ମୁଁ ସ୍ୱପନେ ବା କେଉଁ କାଳେ ?

ପଥେ ଅସି ଅସି ଡାକିଲି ଅନେକ ବାର
ଖୋଲିଛି ଉଦାର ବକ୍ଷ ମୋ ଅନିବାର,
ଫଳନେ ମୋର ଥରିଲେ ଯେ ପାଶେ ଥିଲେ
କୃପାମୟ ତୁମେ ଶୁଣି ନ ପାର କି ଭଲେ ?

ଜୀବନ ଦେଇ ଯେ ନ ବୁଝିଲି ପ୍ରେମ-ତୋଷ,
କିପରି କହ ତ ବୁଝାଇବି ତାର ଦୋଷ ?
ପାଥେୟ ନ ଦେଇ ବରଜିଲ ଯେ ବା ଦୂତ,
ଫୁଲ୍ଲ ବୋଲି ତାରେ ଡାକିବାର ଅଦ୍ଭୁତ ।
ତେଣୁ ସିନା ମୁହିଁ ଠକିଲି ଏପରେ ଅସି,
ଅଶ୍ରୁ ନିଜ ଗୋ ଜାଣିଛ ପର-ବାସୀ ?

୪

ଗୁଳି ମୁଁ ଅସିଛି ବହୁଦୂର ପଥେ ପଥେ,
ଦେଖିଲ ତୁମର ଦର୍ଶ ନାହିଁ ଆଜି ମତେ,
ଫେର ପଛ, ଭାଟି ପଥ ବିଟପିର ଶାଖେ,
ନାରଙ୍ଗି ଟାଙ୍ଗିଛି ଦେଖିଲେ ଆଖେ ଅଖେ,

ଚନ୍ଦ, ତାରା କେବେ ବା ପଡ଼ିବ ଧରା,
ପଥ ମୁଁ ପାଉଁଛି ପର-ଦେଶୀ ପଥ ହରା,
କାହିଁ ହେ ଚନ୍ଦ, କାହିଁ ହେ ପତାକା ଢ଼ବ ?
ସାଧିଲଣି ମତେ ଧରଣୀର ପରାଭବ ।

ଅଲୋକ ବାସୀ ମୁଁ ଅନ୍ଧାରେ ଗଲି ମିଶି,
ମୁକ୍ତ ମୁଁ-ମତେ ଅବରୋଧ ଦଶଦିଶି ।
ଚନ୍ଦ ରହିଲା, ପତାକା ନୋଇଁଲା ତଳେ,
ଚନ୍ଦନ ମୁଁ ପାଇ ହେଉଛି କାହା ବଳେ ?

ଅଲୋକ ଦେଖାଅ, ଜାଗି ଶୁଣ ମୋର କଥା,
ନିଦ୍ରା କି ଶୋଭେ ଅଶ୍ରିତ ପାଇଁ ବଥା ?

୫

ଅମ୍ବର-ଦେହ-ଅଳଙ୍କାର ଧରି ଦେହେ
ଆସିଥିଲି ପରି ସେ ଦିନ ଏ ଭବ-ଗେହେ ?

କାହିଁ ସଉରଭ ? କାହିଁ ଦେବତାର ଶିରୀ ?
ଏଇ ଦେହେ ମୋର ଚୁମ୍ବିଥିଲା କି ପରୀ ;

ଏ ବପୁ ଦେଖି କି ସ୍ପର୍ଦ୍ଧା ବନ-ପଥେ,
ହେଲି ବ୍ୟାକୁଳ, ଚନ୍ଦ୍ର-ଚକୋର ସାଥେ,

## ଜୀବନ ଚିନ୍ତା

ଉଲ-ଚଣ୍ଡଳ-ଗୁମ୍ଫା-ଦକ୍ତଳ ଘାସେ
ଅଳସେ ଅଉଜ୍ଜ, ଶମାଇ ଚରଣ ପ୍ରାନ୍ତେ,
ଚୁମ୍ବି ଥିଲି ମୁଁ ଲଜ୍ଜାନତ ସୁରବାଳା,
ଅଲିଙ୍ଗନେ ତା ବାଜୁଥିଲା କରବଳା,
ନର ହେଲି, କାହିଁ ଦେବତ୍ୱ ଗଲା ଚାଲି
ଷଇତାନ ମୋର ଲକ୍ଷ୍ମୀରେ ନିଏ ଭାଡ଼ି
ଏବେ ଗୋ ଅଦ୍ଭୁତ ପଲ ଫଳ କରି ଖାଏ,
ଅନ୍ତର ପରାଣେ ଭଗବାନେ ଡାକୁଥାଏ ।
ବୁଝିଲି କି କିଏ ଗୁରୁ ନିଶ୍ଚୟ ମାନ ?
ତେଣୁ ମୁଁ ବୋଲଇଁ ନିଦ୍ରାଛ ଭଗବାନ ।

୨

ଧରଣୀରେ ଅଛି ମନ୍ତ୍ର ଭୁଲିଲି ପରା,
ପାଇବ କିଏ ହେ ନିସ୍ତାର ପଥଦ୍ୱାର ?

ଦେବତାରେ ଏ ଯେ ସଂସାର ଭୁଲାଇଲା ।
ସରଗ ବାସୀ ସେ ମୃତ୍ତିକା ଆଦରିଲା,
ବିରାଟ ସେ ଆଜି ଧାଇଁଛି କ୍ଷୁଦ୍ର ଆଶେ,
ସନାତନ ପ୍ରାଣ ବାନ୍ଧୁଛି କ୍ଷଣିକ ପାଶେ,

ସୁନ୍ଦର ସେ ଗୋ ଭୁଲୁଛୁ ଇତର ରୂପେ,
ଚିର ଉତ୍ସର୍ଗ ଗଢୁଛୁ ଅତଳ କୂପ ।
ନାହିଁ ନିସ୍ତାର ! ନିସ୍ତାର ନାହିଁ କି ହେ ।
ମଙ୍ଗଳ ହାତ ପାତିବାକୁ ନାହିଁ କିଏ ?
ଅମୃତ ପାୟୀ ମରଣରେ ଦିଏ ଧରା,
ନନ୍ଦନ ବାସୀ ନରକେ ଚଳଇ ପରା ?
ଶଂକର-ଶୂଳ ଗରଜି ଉଠିବ ନାକି
ଅତ୍ୟାଚାର ଏ କାଟିବାକୁ ଟିକି ଟିକି ?
କୈଳାସେ ଅଳସେ ରହିଲେ ଦେବତା ଦଳ
କେ ଫୁଟିବ ଘୋର ଅନ୍ଧାର କଳବଳ ?
ଶତଶ ନର ଯେ ସୃଷ୍ଟି କରୁଛି ବିଷ
କାଳିଆଣର ତଳ ହୁଏ କିବା ଅବଶେଷ ?
କହିବାର ଯାହା, ତୁମ୍ଭ ହେବ ଅବଧାନ,
ଉଠନ୍ତି ଦେବ ଶିଖା, ନିଦ୍ରାରୁ ଭଗବାନ ।

---

## ଧରଣୀ-ବାସ

୧

ଥରେ ଥରେ ଲାଗେ ମନେ ଏ ଜୀବନ ଅମୃତରୁ ଜାତ
ନୁହେଁ ଏହା ମୃତ୍ତିକାର । ଧରଣୀର କଳୁଷ ସଂଘାତ

## ଜୀବନ କଥା

ଉତ୍କଟ ଉଦ୍ଧୁଛି ମୋର ଶ୍ୱେତ-ପୂତ ଦେବତା ଜୀବନ
ବିରୂପ କରୁଛି ଦେହ, କର୍ଦ୍ଦମିତ କରୁଅଛି ମନ ।

ମନେ ହୁଏ କିଏ ମୋର ଜନ୍ମ-ରାତେ ସେପ୍ରେମ ଅନ୍ଧକାରେ -
ସେ କେଉଁ ସ୍ୱପନ-ଦଣ୍ଡେ ସ୍ୱର୍ଣ୍ଣଦ୍ୱୀପ ତଟବନଧାରେ

ନେଲା ମୋ ମନ୍ଦାର ମାଳା ମୋ କଣ୍ଠରୁ କାଢ଼ି ଦ୍ୱେଷଭରେ
ଶରୀରୁ ମୁଛାଇ ଦେଲା କଳ୍ପ-ପୁଷ୍ପ-ରେଣୁ ନିଜ କରେ;

ସ୍ୱର୍ଣ୍ଣ-ଅରବିନ୍ଦ-କାନ୍ତି କେଉଁ ମୋର କାଢ଼ି ଦେଲା ଥୋଇ
ପାରିଜାତ-ଗନ୍ଧ ଦେଲା ମୋ ନିଖିଳ ଦେହୁଁ ଧୀରେ ଧୋଇ;

ତା ପରେ ନିକ୍ଷେପି ଦେଲା ଅନ୍ତରୀକ୍ଷୁ ନିଃସହାୟ କରି
ଧରଣୀର ମୃତ୍ତିକାରେ ପଡ଼ିଲି ମୁଁ ମୃତ ଉଲ୍‌କା ପରି

ତା ପରେ ମୃତ୍ତିକା-ସ୍ପର୍ଶେ ଏ ମାଟିର ଲକ୍ଷ କୀଟ ସମ
ଆରମ୍ଭିଛି ଜୀବଲୀଳା । ମୋହବଶେ ଭୁଲିଛି ପରମ,—

ମୋ ଦୈବତ ଅଭିଜାତ୍ୟ । ଧରଣୀର ଜୀବନ-ସଂଗ୍ରାମେ
ଜୀବନ ଦେଉଛି ଢାଳି ସଂସାରର ଘୃଣ୍ୟ ଶ୍ରେୟ ନାମେ ।

ପ୍ରମାଦମୟ ଏ ଜୀବନ । ନିର୍ମାପିତ ଶୁଷ୍କ ପୁଷ୍ପ ସମ
ମ୍ରିୟମାଣ ମୋର ପ୍ରାଣ ପୂର୍ବଜନ୍ମ ମନ୍ଦାର ସ୍ମରି ।

୨

ହାୟ ରେ ଧରଣୀ, ତୋର ସ୍ୱର୍ଗ ଏତେ ଅସ୍ଥିର କିପାଇଁ ?
ନିସର୍ଗ-ଅତିଥି ଅସି ତୋ ବାୟୁର ତପ୍ତ-ଘ୍ରାଣ ପାଇ
ଜୀବନେ ମରଣ ଭୋଗେ ମୃତ୍ତିକାର କାମନା-ବାସନା
ଅନ୍ଧ କରେ ଶତ୍ରୁ ତାର । ଦେବତାର ଅମୃତ-ଚେତନା
ପଦେ ପଦେ ମୃତ୍ୟୁ ଲଭେ । ପ୍ରାଣ-ଘାତୀ ବିଷୟ-ସଂଗ୍ରାମେ
ବିଷମ ଜଞ୍ଜାଳ-ଜାଲ ଘେରେ ତାହାର କୃତାର୍ଥତା ନାମେ,
ନତ କରେ ଶିର ତାର; ଅବଶେଷେ, ଅଶ୍ରି ତୋର ତଳ
ଅପଶାର ଭାରେ ସେ ଯେ ଚୁମ୍ବେ ପଦ ଜରା ମରଣର ।
ଭୂମାର ପରମ ସ୍ୱର୍ଗ ପ୍ରାଣୁ ଲଭେ କ୍ରମଶଃ ଜୀବନେ
କ୍ରମଶଃ ଡୋବଇ ମାୟା-ଅନ୍ଧକାର ମରଣେ ମରମେ ।
ସତ୍ୟର ସନ୍ଧାନ ଭୂଲେ, ମିଥ୍ୟା ପଛେ ସତ୍ୟ ବୋଲି ଧାଏଁ,
ଦୈନ୍ୟର ସଖ୍ୟତା କଲେ, ଅଭ୍ୟାଗ୍ନ ଅଙ୍ଗୁଳି ଦେଖାଏ ।
ଜୀବନୁଁ ଆନନ୍ଦ ତୁଟେ, ନ ତୁଟଇ ବୁଭୁକ୍ଷା ପ୍ରାଣର
ହୃଦୟେ ଉଠଇ ଆଶା, ଲଭିବାକୁ-ବ୍ୟର୍ଥତା ମାତର;
ସୁଖ ବୋଲି ଯାହା ମିଳେ, ହୁଏ ତାହା ଶେଷ ତିକ୍ତତାରେ
ବ୍ୟର୍ଥତାର ଅସନ୍ତୋଷେ ପ୍ରାଣମରେ କୁନ୍ଦି ହାହାକାରେ ।
ଅବଶେଷେ ଅନ୍ତ୍ୟସ୍ଥେ ହସ୍ତ ଟେକି ମାଗେ ପରିତ୍ରାଣ
ହେ ଧରଣୀ କହ କାହିଁ ସ୍ୱର୍ଗ ତୋର ଏତେ ଅକଲ୍ୟାଣ ?

୩

ତଥାପି ଧରଣୀ ତୁଚ୍ଛ, ସ୍ୱପ୍ନ ନହେ, ଶୂନ୍ୟ ଅକଲ୍ୟାଣ
ତୋ ମାଟିରେ ମାନବର ଶୁଦ୍ଧ ସ୍ୱପ୍ନ, ବିଧାତା-ବିଧାନେ ।
ଏତେ ଦେବେ ଏହି ମାଟି, ଶତକୃତ୍ତି, ଝାଟେ ମାନବର
ସତ୍ୟ ଲାଗି, ମୁକ୍ତି ଲାଗି, ନାହିଁ ଯାଏ, ଶତ୍ରୁ ଅବସର ।
ଊର୍ଦ୍ଧ୍ୱେ ଏ ଅନନ୍ତାକାଶ, କୋଟି କୋଟି ତାରକାମଣ୍ଡିତ
ପ୍ରକୃତି ଶବଳ ଲୀଳା, ସାଗର, ମଧୁର ସଙ୍ଗୀତ
ଅନ୍ତ୍ୟପେଷ ଋତୁସ୍ରୋତ, ଗ୍ରୀଷ୍ମ, ବର୍ଷା, ବସନ୍ତରେ ଯେଉଁ,
ସ୍ୱପ୍ନାଲୋକ-କ୍ରୀଡାମୟୀ, ଲୀଳାମୟୀ, ଦେବାସ୍ପଦ ବେଶ,
ସମସ୍ତ ଉଚ୍ଛଳ ପନ୍ଥା, ମାନବର, ଚେତନା ବାହାରେ
ଯେ, କେବଳ ଦୃଷ୍ଟି ରଖେ, ହେ ଧରଣୀ, ତୋର ମୃତ୍ତିକାରେ;
ଧରଣୀର ସୁଖଦୁଃଖେ, ଜଞ୍ଜାଳରେ, ପରମ କଲ୍ୟାଣ
ଦେଖେ ଯେ । ମରଣ ମଧ୍ୟେ, ଲଭଇ ଯେ ଅମୃତ-ଆଘ୍ରାଣ ।
ଜୀବନ ସଂଗ୍ରାମେ ଯେବେ, ଭଗ୍ନଜାନୁ ଗୃହେ ଆସେ ଫେରି
କାହାର ମୃଣାଳ ବାହୁ ଶାନ୍ତି ଦିଏ, କଣ୍ଠେ ତା'ର ଘେରି,
ଜୟ ଲଭି ସଂଗ୍ରାମରେ, ଫେରିଲେ ତା,-ପ୍ରବାଳ-ଓଷ୍ଠର
ପରମ ଚୁମ୍ବନ ଲଭି କୃତାର୍ଥତା, ଲଭେ ଜୀବନର ।
ପିତାମାତା ବନ୍ଧୁଜନ, ଭଗିନୀର, ସ୍ନେହନଦ୍ଧ ବନ୍ଧନେ
ଯେ ଲଭେ ପରମ ମୁକ୍ତି, ପରଲୋକେ, ଜୟ ଲଭେ ରଣେ ।

ରୋଗଶୋକେ ପ୍ରତିବେଶୀ, ନେତ୍ର ଢାଳେ, ଅଶ୍ରୁ ତାହା ପାଇଁ
ମାଗିଲେ କନ୍ନଣା ତାକୁ କେହ୍ବକେବେ,ନାହିଁ କରେ ନାହିଁ ।
ଅନନ୍ତ ବ୍ୟର୍ଥତା ମଧ୍ୟେ ହେ ଧରଣୀ ଏ ଦାନ  ପରମ
ମାନବେ ମାନବେ ପ୍ରୀତି, ଏ ବିଶ୍ବାସ ଏ ସ୍ନେହ-ଧରମ,
ଅନ୍ତରେ ଅନ୍ତରେ ଏହି ମମତାତ ଦୟା  କରୁଣାର,
କ୍ଷୁଦ୍ର ସମାଜ ମଧ୍ୟେ ଏ ମଧୁର  ସମ୍ବନ୍ଧ-ସଞ୍ଚାର,
ସଂଗ୍ରାମ କୋଠର ଏହି ଅବସନ୍ନ ବିଷଣ୍ଣ ଜୀବନେ
ପରମ ଆନନ୍ଦମୟ କରିଅଛି  ଅମୃତ-ସିଞ୍ଚନେ ।
ସର୍ବ ଅକଲ୍ୟାଣ ପେଲେ, ହେ ଧରଣୀ, ତେଣୁ ତୋ ଆଶ୍ରୟ
ଛିନ୍ନ ଏତେ; ସର୍ବବ୍ୟାପୀ ପରାଜୟେ  ଜୟ-ସ୍ପର୍ଶମୟ ।

---

## ଶେଷକଥା

ହେ ବିଧାତା,

ଦେଲ କୃପାଁ ମୋ ଜୀବନେ ଯେତେ ସବୁ ତିକ୍ତ ଅଭିଜ୍ଞତା ।
ତହେଁ ଦେଲ ଦୟା, ଯାହା, ଇଚ୍ଛା କରେ  ଯାନା ଏ ଧରାର
ଦେବ ପୋଛି ଯାହା ଲିଭ ଯେତେ ଦୁଃଖ, ଭୟ, ଅତ୍ୟାଚାର;

## ଜୀବନ ଗୀତା

ବାହୁରେ ଦେଇଛ କିନ୍ତୁ ଶିଳ୍ପୀର ଘୃଣ୍ୟ ଦୁର୍ବଳତା
ଭରିଛ ରକ୍ତ ମୋ ଦେହେ, ନୀରବରେ ଦେଖେ ଦୁରବସ୍ଥା ।

ଅନ୍ତରେ ଥାପିଲ ମୋର ସତ୍ୟ, ଶିବ ସୁନ୍ଦରର ବ୍ରତ,
ବାହାରେ ଯେ ପଥେ କିନ୍ତୁ ଘୂରାଇଛ ମୋ ଚରଣ ଗତ,
ସେ ପଥେ, କି ବିଭତ୍ସତା, କିଅବା ପାପ, କିବା ଅନ୍ୟାୟେ
ଅଜ୍ଞାତେ ପୂରାଇ ମନ୍ତ୍ରେ, କଳୁଷିତ କଲ ଶବ୍ଦେ ହାସ୍ୟେ ।
ପ୍ରାର୍ଥିଲି ମୋ ଦୀନ ଆତ୍ମା ସ୍ୱରଗର ଜ୍ୟୋତି ସଦାକାଳେ
ବିପଥିଲ ପଦେ ମମ, ଟାଣି ନେଉଛ ମୋହ ଅନ୍ଧକାରେ ।

ମରମେ ଦେଲ ତ ମୋର ସ୍ନେହର ଭକ୍ତି-ଜାହ୍ନବୀ
ଅକାଳେ, ଅବଶେଷେ କିନ୍ତୁ ଅନ୍ତରରେ ଟଳି ମୁହିଁ ମ୍ଲାନ ।
ତାହା ସ୍ନେହ କାରେ ଦେଲି, ତାହା ପାଇଁ କଲି ଅଭିସାର
ଯୋଗ ଦୋଷେ ସ୍ନେହ ମୋର ହୋଇଗଲା ଘୃଣ୍ୟ ବ୍ୟଭିଚାର ।

ପିତୃମାତୃହୀନ ବୋଲି ଯେବା ସ୍ନେହେ ବାଲ୍ୟେ ବଢ଼ାଇଲେ
ଯୌବନକୁ ମୃତ୍ୟୁ ତବ ଗୋଟି ଗୋଟି ନେଲ ଧୀରେ ଧୀରେ ।
ସବୁଅଡ଼େ ଭଗ୍ନ ଆଶା, ବ୍ୟର୍ଥତାର ସ୍ତୂପ ଗୃହ ପାଶେ,
ଲକ୍ଷ୍ୟହୀନ, ଛିନ୍ନ ଭିନ୍ନ, ଏ ଜୀବନ ଦେଲ କେଉଁ ଆଶେ ?

ସଙ୍ଗହୀନ ପ୍ରେତ ପରି ଠିଆ ମୁହିଁ ଆଜି ଜୀବଗ୍ରାମେ
ଦରିଦ୍ର ଲାଞ୍ଛିତ, ପାପୀ—
ହେ ବିଧାତା ଘୃଣେ ତୋର ନାମେ ।

୨

ଅର୍ଦ୍ଧପଥେ ମୁନିଙ୍କ ନିକେ 'ଶେଷ ହେବେ ସବୁ ଅଭିଳାଷ ?'
ଜୀବନକି ଏମନ୍ତ ପରି ଖାଲି ପଦଦଳିତ ଦାସ ?
ଅରଣ୍ୟର ବୃକ୍ଷ ପରି ମୁଁ କି ମଥା ନ ଟେକିବି ନଭେ
ପ୍ରଭଞ୍ଜନ, ବଜ୍ର, ବୃଷ୍ଟି ସଙ୍ଗେ ଲଢି ଜନ୍ମର ଗରବେ ?
ବିଧାତା ନିର୍ଦ୍ଦେଶ ବୋଲି ନିଜେ ମେଲି ଘଣ୍ଟା ସରତେ
ହେଉଥିବ ଲାଳିତ କି ବାତ୍ୟାର ହାତର ଚକ୍ରେ ?
ବିଦ୍ରୋହ ଆସିଛି ଆଜି, ଯେ ବିଦ୍ରୋହ ଲାଞ୍ଛନାରୁ ଆସେ
ବାଧା ପ୍ରାପ୍ତ ସ୍ରୋତ ସମ, ଧାଏଁ ଯାହା ବ୍ୟଗ୍ରେ ମୁକ୍ତି ଆଶେ ।
ଆଜି ମୁଁ ବିଶ୍ୱରେ ମନେ ପୋଛି ଦେଇ ସକଳ ଅତୀତ
ରଚିବି ମୋ ଜୀବନରୁ ନବ ଏକ ମହାନ ସଂଗୀତ ।

ପାପ ଯାହା କଳୁଷିତ ଯା' ଲାଞ୍ଛନା ଯା' ଶୃଙ୍ଖଳିତା' ବନ୍ଧନ,
ସତ୍ୟେ, ଶିବେ ଶବଳିତ କରିବି ଏ ସକଳ ଜୀବନ ।

ଝିଅଲୀ ବାଧାଢାଁ ଲାଗି ଅନୁଯୋଗ ଅବା ଅଭିଯୋଗ,
ନରକ—କଷଣେ, ଲୋକେ ନର ଲାଗି ରଚିଥିବ ଯାଗ ।

---

## ବିଶୃଙ୍ଖଳ ସୃଷ୍ଟି

ମାନବେ ମାନବ ଶାସେ, ଏକ ଅନେକ ରଖେ କ୍ରୀତ ଦାସ,
ଧନୀର ପ୍ରାସାଦେ ବସି, ଦରିଦ୍ରର କରେ ଉପହାସ ।
ଦରିଦ୍ରର ଅନ୍ନ ନେଇ ଶ୍ରଦ୍ଧା କରେ ନାରୀ-ସୁରା ପାନ
ପାପର ପରମ ଜୟ, ସାଧୁ ଲଭେ ଭକ୍ତ ଅପମାନ ।
ଶରୀରର ସ୍ୱେଦ ଢାଳି ଦରିଦ୍ରେର ନମିଳେ ଆହାର,
ବହୁ ଭୋଜ୍ୟ କୃଷି ପୁରେ, ବ୍ୟଭିଚାରୀ ଯେତେ ଅକର୍ମୀର ।
ଅଯୋଗ୍ୟ ମସ୍ତକେ ମଣି, ଯୋଗ୍ୟତାର ନାହିଁ ପୁରସ୍କାର
ନ୍ୟାୟର ମସ୍ତକେ ପଡ଼େ ଜଗତର ସବୁ ଅତ୍ୟାଚାର ।
ଏହିତ ସୃଷ୍ଟିର ଦୃଶ୍ୟ ? ଲାଞ୍ଛିତର ବ୍ୟାକୁଳ କ୍ରନ୍ଦନ
କର୍ଣ୍ଣେ ପଡେ; ଦେଶେ ଦେଶେ ଅନ୍ୟାୟର କଠୋର ବନ୍ଧନ

ମାନବ ଶରୀର ଭେଦ ବିଷଜ୍ୱାଳା ଅଣେ ଶୋଣିତରେ
କ୍ରନ୍ଦନ ଉଠଇ କୋଟି ନରବକ୍ଷୁ  ବିଷମ  ଆଘାତରେ ।
ଅଭିଜାତ ଧନୀଙ୍କର ରଥତଳେ ଭାଗ୍ୟ ଦରିଦ୍ରର
ପଲେ ପଲେ ହୁଏ ପିଷ୍ଟ । ପ୍ରାଣହୀନ  ଜୀବନ-ସମରେ
ଭଗ୍ନଜାନୁ, ଧରାଶାୟୀ ସହଜରେ ହରେ  ଦରିଦ୍ରରେ,
ଧନୀଙ୍କର ଯାନ ଚାଲେ ଜୟ-ଗର୍ବେ ତାଙ୍କ  ଶବ  ପରେ ।
କିଏ କରେ ନ୍ୟାୟ ରକ୍ଷା ? କାହା ଆଗେ ପୀଡ଼ିତ  ଦଳିତ
ଜଣାଇବେ ତାଙ୍କ ଦୁଃଖ ? କା ହୃଦୟ ହୋଇବ  ଗଳିତ
ଜଗତର ଦୁର୍ବିପାକେ ? ଯୁଗେ ଯୁଗେ ନୟନର ଜଳେ
କୋଟି କର ଊର୍ଦ୍ଧ୍ୱେ ତୋଳି ଧରଣୀର ନୀଳାମ୍ବର  ତଳେ
ମାନବ ଦେଇଛି ତା'ର ଉଚ୍ଛ୍ୱସିତ ବ୍ୟଥିତ ପ୍ରାର୍ଥନା
ଅଜ୍ଞାତ ପୁରୁଷ ପାଶେ; ଲଭିଛି କି ଯୁକ୍ତ  ଅଭ୍ୟର୍ଥନା
ମାନବର ଅଶ୍ରୁଜଳ, ଦେଇ ପୂଜିତ ଦେବତାର  ପାଶେ
କେବେ ବହେଲେ ? ମାନବର ଦୀର୍ଘ  ଇତିହାସେ
ତେବେ ଏ କ୍ରନ୍ଦନ କିଆଁ ? ଗୃହେ ଗୃହେ କରୁଣ  ବିଳାପ,
ଜୀବନେ ଜୀବନେ ବ୍ୟଥା; ଦୁଃଖୀ ଭାଗ୍ୟେ  ଲାଞ୍ଛନା-କଳାପ
ଏ ତୀବ୍ର ଜୀବନ-ଯୁଦ୍ଧେ ? ଶକ୍ତି ଦାନେ କିପାଁ ଏ ଭିନ୍ନତା ?
ମାନବର ସୁଖେ ଦୁଃଖେ କିପାଁ ଏହି  କ୍ରୂର  ନିର୍ମମତା ?

## ଜୀବନ ଗତ

ନାକେ ସେ ଈଶ୍ୱର ଲାଗି ଧସ୍ର ହୁଏ ରଞ୍ଜିତ ରକ୍ତରେ
ମାନବେ ମାନବେ ଦ୍ୱେଷ, ଜାତି ଜାତି ଯାନ୍ତି ଭିନ୍ନ ପଥେ ।
ଅଜ୍ଞାନ ଦେବତା କେବେ ଦ୍ୱନ୍ଦ୍ୱ, ଦୁଃଖ ଦେଖି ମାନବର
ଶୁଣେ ଅନ୍ତରୀକ୍ଷେ ବନ୍ଧୁ ଅଭିଯୋଗ ଲାଞ୍ଛିତ ନରର ?

ଭ୍ରାନ୍ତି । ଭ୍ରାନ୍ତି । ମାୟାଚ୍ଛନ୍ନ ଏହି ଧରଣୀରେ
ଏ ବିଶ୍ୱାସ ଏକ ମାୟା । ଆରାଧନା ଅଜ୍ଞେୟ ଶକ୍ତିରେ
ଫଳହୀନ ବିଡମ୍ବନା । ଧରଣୀରେ ମାନବ-ସୃଜନ
ଜୀବନ୍ତ ମରଣ ଲାଗି । ଏ ସୃଷ୍ଟିର ସର୍ବ ବିଘଟନ
ମାନବ-ଲାଞ୍ଛନା ଲାଗି । କ୍ରୀଡାପର ଶିଶୁପରି
ପୁତ୍ତଳିକା ସମ, ସ୍ରଷ୍ଟା ଗଢ଼ି ଭାଙ୍ଗି ଢଳ ଢଳ ଜାଇ ।

କି ଉପାୟ ଉଦ୍ଧାରର ? ଉଠ ନର, ଜଗରେ ବିଦ୍ରୋହ
ସାଙ୍ଗକର ଆରାଧନା ଶେଷ ହେଉ ଧର୍ମର ସମ୍ମୋହ,
ଲାଞ୍ଛିତ ଦଳିତ ଯେତେ, ସର୍ବେ ଆସ ଏକ କେନ୍ଦ୍ରୁ ଚଳେ
ଯୁଗ ଯୁଗ ଗଠିତ ଏ ସମାଜରେ ନାଶ ଏକା ଥରେ ।

ପ୍ରାଚୀନରେ ଚୂର୍ଣ୍ଣ କରି ଗଢ଼ ତବ ନୂତନ ସଂସାର,
ନିଜର ରକ୍ତରେ ଗନ୍ଧା; ଶେଷ ହେଉ ଅଶୀଷ ଉପାର ।

ଅଭିଜାତ୍ୟ ଚୂର୍ଣ୍ଣହେଉ, ଧନ ହେଉ ସମାନ ବଣ୍ଟିତ
ଜୀବନର ସର୍ବ ସୁଖୁଁ ଦୀନ ଦୁଃଖୀ ନୁହନ୍ତୁ ବଞ୍ଚିତ ।
ବିଜ୍ଞାନ ସମୃଦ୍ଧ ହେଉ ନାନା ସୁଖେ ମାନବ ଜୀବନେ
ଉପେକ୍ଷିତ ଭଗବାନ, ରହିଁଥାନ୍ତୁ ନଭ ବାତାୟନେ ।
ଲାଞ୍ଛନା-ଗଞ୍ଜଣା-ରୋଗ-ଦୈନ୍ୟ ଭରା ଜୀବନ ଜର୍ଜର
କି ଲାଭ ଅଜ୍ଞାତ ଉଦ୍ଦେଶ୍ୟ ମୁଖେ ଡାକି 'ଈଶ୍ୱର', 'ଈଶ୍ୱର' ।

ଉଠ ସର୍ବେ, ନାଶ ମନ୍ତ୍ର ଏଭାବେଳେ ଏ ଅନ୍ଧ ବିଶ୍ୱାସ,
ନୂତନ ସୃଷ୍ଟିରେ ହେଉ ଅନ୍ୟାୟର ନିଃଶେଷ ବିନାଶ ।
ସ୍ୱାର୍ଥ ପଦ ହୁଏ ଛାଡ଼ା, ଖୋଜି ନେବା ମୁକ୍ତି,-ବିନାଶରେ
ନର ଦର୍ପେ ଥରୁକିନା ଈଶ୍ୱରର ସିଂହାସନ ଥରେ ।

---

## ଜୀବନ

ଜାଣି କି ଥିଲି, ଜୀବନ ଏଡ଼ା ବୋଲି—
ଜୀବନ ନୁହେଁ, ମରଣ ପଲେ ପଟଲ
ସୁଖର ଏଥି, କଣା ତ ନାହିଁ—ଏଯେ
ପିଷ୍ଟ ହେବା ଭାଗ୍ୟ ପଦତଳେ ।

## ଜୀବନ ଗତା

ଜନମଠାରୁ ମରଣ ଦିନ-ଯାଏଁ,
ଆଜୀବନେ ଟାଣେ କର୍ମ-ରଜ୍ଜୁ ଧରି,
କର୍ମ-ବୃକ୍ଷ ତିକ୍ତ ଫଳ କାନ୍ତୁ
ଅମର ପାଟେ ନାଢ୍ୟ ପଡ଼େ ଝଡ଼ି ।

ଜୀବନର ଏ କଣ୍ଟକିତ ପଥେ
ଲକ୍ଷ କ୍ଷତେ ଗଳିତ ପଦ ସମ,
ଚଳି ମୁଁ ନାହିଁ ପାରେ ଯେ ଅଜ ପାଦେ,
ବୁଭୁକ୍ଷିତ, କ୍ଲାନ୍ତ ପାନ୍ଥ ସମ ।

ଯନ୍ତ୍ରଣା ତ ହେଲଣି ଏ ଜୀବନେ
ଏ ପାରେ ତିକ୍ତ ଅଭିଜ୍ଞତା
ଦେଖିବା ଦେଖି ମୃତ୍ୟୁ ଅବ ପାରେ
ଭାଗ୍ୟେ ଅଛୁ ପୁଣି କିବା ବ୍ୟଥା ।

———

# ଦକ୍ଷିଣା ପ୍ରତି

ଦକ୍ଷିଣରେ ବାସ ତବ ? କାହା କନ୍ୟା ? କାହା ଗୃହ ବଧୂ ?
ବସନ୍ତ ପ୍ରେୟସୀ କିଗୋ !—ସଙ୍ଗେ ତାର ଭ୍ରମ ଯେ ସର୍ବଦା
ଦକ୍ଷିଣ-କବାଟ ଫେଇ ସ୍ନିଗ୍ଧମାରୁ, ଗୁଳ୍ମଅସ ଲଘୁ
ସାଗର ପର୍ବତ ଡେଇଁ ଅଭିସାରେ ତା ପାଇଁ ପ୍ରମଦା ।
ଆଜି ଏ ଚରଣ ସଙ୍ଗେ, ବାତାୟନ ବସିଛି ମୁଁ ଖୋଲି
ଅପଣାର ଭାଗ୍ୟ ଚିନ୍ତା—ପ୍ରହରେକ ହୋଇଗଲାଣି ନିଶା;
ଶୀତଳ ଚନ୍ଦନ ଲିପି ତୋ ମଟଣ ଦିଏ ଅଙ୍ଗେ ବୋଳି,
ମୁଗ୍ଧ ମୁଁ ନ ପାରେଁ କରି ଅପଣାର ଭାଗ୍ୟର ମୀମାଂସା ।
ଶୀତଳ ପରଶ ତବ, ତରଙ୍ଗିତ କୋମଳ ଅଶ୍ଳେଷ,
ତୁଷାର ଧବଳ ଜ୍ୟୋତ୍ସ୍ନା ଆବରିଛି ଗଗନ ଧରଣୀ,
ଏକା କି ତରୁଣ ମୋର, ବୁକେ ଅଟମ ବେଦନା ବିଶେଷ
ଏକାଳେ । ପାଇଛ କି କି ସେ ବ୍ୟଥାର ସନ୍ଧାନ ରମଣି ?

୨

ଏକଦିନ ସନ୍ଧ୍ୟାକାଳେ ଏ ବ୍ୟଥାର ପ୍ରଥମ ପ୍ରକାଶ,
ତୁଷ୍ଟ ଥିଲ, ଥିଲା ଜ୍ୟୋତ୍ସ୍ନା, ଥିଲା ଘନ ମଦକାରଲ୍ପା,
ଏକାକୀ ନ ଥିଲି ମୁହିଁ; ଗଣ୍ଡେ ମୋର ଅନବ ନିଶ୍ୱାସ
ବାଜୁଥିଲା ଥରି ଥରି, ରକ୍ତେ ସୃଜି ଯାଦୁକରୀ ମାୟା ।

ସେ ଧନ ପାଇଛୁ ଦୂରେ, ଅଛୁ ମୁହିଁ, ସେ ଧନର ସାକ୍ଷୀ
ଅର୍ପିଅଛ ଅଳ୍ପ ତୁମେ । ବ୍ୟଥା ପୁଣି ଜାଗଇ ନୂତନ,
ମନେ ହୁଏ ଅଦ୍ଧା ସତେ ଏ ଜୀବନ କେଡ଼େ ନିରଭାଗୀ,
ନପାଇ କେବଳ ତାରେ ଯାହା ଲାଗି ଏତେ ଅନ୍ୱେଷଣ ।
ହାୟ ଏ ମାନବ ଜନ୍ମ—ପ୍ରାଣେ ଏଡ଼େ ଗଭୀର ପିପାସା,
ହାତେ ତାର ନାହିଁ କିନ୍ତୁ କରିବାକୁ ତୃଷା ପରିତୋଷ;
ନିଷ୍ଠୁର ଏ ପରିହାସ ।—ତୃପ୍ତି ନାହିଁ ଅଛି ମାତ୍ର ଆଶା,
ମିଳନର ଆଶା ନାହିଁ,—ପ୍ରିୟ ପାଇଁ ପ୍ରାଣେ ଏଡ଼େ ଶୋଷ ।
ବିଦ୍ରୋହେ ଉଠୁଛି ମନ ନିନ୍ଦି ଦଇବେ, ଇଚ୍ଛା ଫିଙ୍ଗେ ଦୂରେ
ଏ ସମାଜ, ଏ ଅନୀତି, ଯାନ୍ତ୍ର ଶୃଙ୍ଖଳ ତବ ସିନ୍ଧୁକୂଳ ।

୩

ଦୂର ସେ ଦିକ୍‌ଚକ୍ର ପାରେ କେଉଁ ପଦ୍ମାପ୍ରାସାଦର ରାଣୀ,
ଶ୍ୟାମଳ ତମାଳ ତାଳୀବନ ଘେନ ଯା ସୀମାନ୍ତ ଘେରି
ତହିଁ ମୋତେ ଘେନିଯାଅ; ବଦନରେ ଅନ୍ତରର ବାଣୀ
ନ ଫୁଟୁ, ପ୍ରେୟସୀ ଯହିଁ ବୁଝିଯାଏ ଅନ୍ତରର ଖେଳା ।
ବସି ପାଖେ କାଅ ମତେ ହେ ଚଞ୍ଚଳା ! ହେ ଶୀତଳ-ଦେହା !
ତୁମର ସେ ଦୂର ଦେଶେ—ନୀଳସିନ୍ଧୁ, ସ୍ୱର୍ଣ୍ଣବେଳା ପରେ

ଶତଦ୍ରୁଣୀ ପରି ଯହିଁ କବରୀର ଫେନପୁଷ୍ପ ଫେଇ
ଅହର୍ନିଶ ପିଟେ ମଥା; ବିଳାପେ ତା' ସାଗର ବେଳା ଥରେ।
ଜଳନାରୀ ନୃତ୍ୟ ହାସ୍ୟେ ଭଙ୍ଗେ ଯହିଁ ମହା ନୀରବତା,
କେବଳ କଲ୍ଲସ୍ୱ ପଦେ ମଥିତ ଯା' ଜନମାପ୍ତ ବେଳା,
ମଧ୍ୟାହ୍ନେ କିରଣର ଯହିଁ କେତକୀର କନକ ସିକତା।
କୀର୍ତ୍ତି କରେ ପଦଚିହ୍ନେ, ଖୋଜୁଁ ପ୍ରିୟା-କ୍ରୀଡ଼ାଭ୍ରଷ୍ଟଚଳା।
ଚନ୍ଦ୍ରାଲୋକେ ସଙ୍ଗହୀନୀ ଖେଳୁଥାନ୍ତି ଯହିଁ ଜଳ-ନାରୀ,
ନଗ୍ନଦେହା, ଘନକେଶେ ପୁନିତମ୍ବ ଯୁଗଳ ଢୋଡ଼ାଇ।
ଉଚ୍ଛଳ ଯୌବନ-ମଦେ, ଦରେ ଦରେ ଚନ୍ଦ୍ରିକା ବଦାଇ
ହସୁଥାନ୍ତି, ଦରେ ଦରେ ଶରୀରର ସୌରଭ ଛଡ଼ାଇ।
ସେହି ଦେଶେ ନାଅ ମେଲେ, ଭୁଲି ପାରେ ଧର ମତେ ଧର
ସନାତନ ସ୍ୱପ୍ନ ଯିବ ଏ ଜଞ୍ଜାଳ ଠେଲି ସଂସାରର।

୪

ତୁମର ପଞ୍ଜରର ମଧ୍ୟେ କର ସତେ ଜୀବ, ଦେହହୀନ,
କ୍ଷୁଧା ମୋର ଯାଉ ଗୁଳି, ନ ରହୁ ଏ ସୀମା ଶରୀରର
ବିହଙ୍ଗ ପରି ମୁଁ ଦୂର ଦିଗନ୍ତେ ହୋଇଯାନ୍ତି ଲୀନ
ଉଚ୍ଛ୍ୱାସରେ ଗାଉଥାନ୍ତି, ବାଣୀ ମୋର ପ୍ରବାସୀ ପ୍ରିୟର ।

ଅଶରୀରୀ ହୋଇ ଥରେ ମିଶନ୍ତି କି ତବ ଦେହ ସାଥେ,
ନ ଥାନ୍ତା ବାସନା, ଭୋକ, ନ ଥାନ୍ତା ଏ ଶୋଣିତର ପୀଡ଼ା,
ଅତୀନ୍ଦ୍ରିୟ ହୋଇ ଏଇ ସଂସାରରେ ଫିଙ୍ଗି ପଦାଘାତେ
ଭୋଗନ୍ତି ତୋ ସଙ୍ଗେ ମିଶି ଦେହହୀନ ସୌନ୍ଦର୍ଯ୍ୟର କ୍ରୀଡ଼ା,
ଦାରୁଣ ଏ ଭାଗ୍ୟ ମୋର, ଇଚ୍ଛାମତେ ଚଳେ ନା ଜୀବନ,
ଥଉ କେ ଅଦୃଷ୍ଟ ପ୍ରଭୁ ବାଧା ମତେ ଦିଏ ପଦେ ପଦେ,
ଇଚ୍ଛା ମୋର, ଛିଣ୍ଡାଇବି ଏ ଶୃଙ୍ଖଳ, ଏ ଯେ ନିୟନ୍ତ୍ରଣ,
କଟିବ ଜୀବନେ ମୋର ଉଚ୍ଛୃଙ୍ଖଳ ସ୍ୱାଧୀନ ଆନନ୍ଦେ ।

୫

ବନ, ବନ, କି ଶୀତଳ କି ପେଲବ ପରଶ ଦେହର,
ଯୌବନ ଜୀବନ୍ତ ଭାର ହସ୍ତ ସଖି, ବକ୍ଷ ପରେ ତବ
ଦେଇଛୁ ଚନ୍ଦନ ଲେପ ? କେଉଁ ବନ କୁସୁମ କେଶର
ଲଗାଇଛୁ ଦେହେ ତବ ଏ କୋମଳ ମଧୁର ସୌରଭ ?
ବାତାୟନ ଦିଏଁ ମୁଦି, ସ୍ୱପ୍ନେ ମୋର ଚକ୍ଷୁ ଅନମିତ,
ଅଙ୍ଗନ ବକୁଳ ତଳେ ଶୁଭୁଥାଉ ତୋ ବଳା ବାଜଣା,
କେବେ ସଖି, ଯିବ ଫେରି ? ପଦପାତ ସରମ ଶଙ୍କିତ
ଅପେକ୍ଷି ପ୍ରିୟ ଯେ ତେଣେ କରୁଥିବ ଦିବସ ଗଣନା ।

---

# ସ୍ୱର୍ଣ୍ଣଯୁଗ

ଗଲା ସ୍ୱର୍ଣ୍ଣଯୁଗ କାହିଁ ?
ଦେବତା ମାନବ, ସାଥୀ ହୋଇଥିଲେ
ଭେଦ ପରା ଥିଲା ନାହିଁ ।

ସ୍ୱର୍ଗ ମନ୍ଦାକିନୀ ତଟ,
ଦେବତା, ଧରଣୀ— ଧୂଳି-ସ୍ପର୍ଶ ପାଇଁ
ଧରୁଥିଲେ ପରା ଘଟ ।

ସୁଖେ ଦୁଖେ ମନୁଷ୍ୟର
ମିଶି, ଡେକୁଥିଲେ ନୟନୁଁ ଲୋତକ
ସ୍ନେହେ ଧରି କରେ କର ।

ସୁଖେ ଦୁଖେ ମନୁଷ୍ୟର
ସଖାସଖୀ ପରି ପାଖେ ହୋଇ ଠିଆ
ଦେଉଥିଲେ ପରା ବଳ ?

ସେ ଯୁଗ ଯେ ଗଲା କାହିଁ
ଲୁହ ଢାଳି ଢାଳି ଡାକିଲେ ତ ଏବେ
ଦେବତା ଆସନ୍ତି ନାହିଁ ।

## ଜୀବନ ଗତା

କି ହୋଇଲା ଧରଣୀର ?
ସେଇତ ଅକାଶ, ସେଇ ରବି, ତାରା,
ସେହି ନଦୀ ସେହି ନୀର ।

ସେହି ନାରୀ, ସେହି ନର
ରାଧିକା-ବିରହ ଏବେ ମିଳେଣ ଘରେ
ନାରୀ-ଅଖି ଛଳ ଛଳ ।

ଅଛୁ ସେହି ସୁଖଦୁଖ
ସୁଦାମା-ଦାରିଦ୍ର୍ୟ କୋଟି ଗୁଣ ହୋଇ
ପୋଡୁଛୁ ଧରଣୀ-ବୁକ ।

ଦେବତା କାହିଁ ଗୋ ତେବେ
ହାତେ ପୋଛୁ ଦେଇ— ନାହାନ୍ତି କାହିଁକି
ନର ନେଣ୍ଡୁ ଲୁହ ଏବେ ?

ତେବେ ମିଛ ଜଳ-କଥା,
ଭଗବାନ ଅଛ— ତବ ଅଧିକାର
ହରିବାକୁ ନର ବ୍ୟଥା ?

---

# ସୁଖ ଦୁଃଖ

ମତେ ଯିନା ସୁଖୀ କଲ, ଚତୁର୍ଦ୍ଦିଗେ ମୋର
ସ୍ରଷ୍ଟା ହେ, ଦୁଃଖର ଏ କି ବିଭୀଷିକା ଘୋର !
ମୋ ପ୍ରାଣେ ଢାଳିଲ ଯିନା ସୁଧା ତୁମ୍ଭ ନାସି
ପ୍ରଣୟର ହେମ-ପାତ୍ର ; ଅନ ବକ୍ଷେ ଢାଳି
ନାସି ଯାଏ ହଳାହଳ । ଯୋ ଭୋଜନ ପାଶେ
ଏଇ ଯେ ମାନବ-ମୁଖ ମୋ ଉଚ୍ଛିଷ୍ଟ ଆଶେ
ବ୍ୟାକୁଳେ ରହନ୍ତି ଚାହିଁ, ତୁମ୍ଭେ ନାରାୟଣ
ଦେଖୁଛ ତା ଶୂନ୍ୟ ଚକ୍ଷୁ ?
                                        ଏ ଦୈନ୍ୟ କାରଣ
ସତ୍ୟ ମୁଁ ଖୋଜଇ ଚିତ୍ତେ, ଦିଗ ଦିଗନ୍ତରୁ
ମାନବର ଆର୍ତ୍ତ ସ୍ୱର କୋଟି ହୃଦୟରୁ
ଆସି ପୋର କର୍ଣ୍ଣେ ପଶେ । ମୃତ୍ୟୁ ଅପମାନ
ଦାରିଦ୍ର୍ୟ, ଦୀନତା, ରୋଗ ରାଜ-ଅବଧାନ
କେତେମନ୍ତେ ସହେ ନର ଗୁରୁ-ଅତ୍ୟାଚାର,
ପ୍ରତିକାର କାହିଁ ତାର, କାହିଁ ପ୍ରତିକାର ?
ଏ ଦୁଖ-ସମୁଦ୍ରେ ମୋର କ୍ଷୁଦ୍ର ସୁଖ ଲାଗେ
ପରିହାସ ସମ ମତେ । ପ୍ରିୟା ଅନୁରାଗେ

## ଜୀବନ ଚିତା

ବାହୁ ତାର କଣ୍ଠେ ମମ ଭିଡ଼ିଲେ ପ୍ରାଣରେ
ସହସା ମୋ ଚିତ୍ତେ ଉଠେ ଚିନ୍ତା ବିରହରେ
କେମନ୍ତେ କାଟନ୍ତି କାଳ କୋଟି ନାରୀନର
ନିଃସଙ୍ଗ ଶୟନେ କାହିଁ । ଗୃହେ ପ୍ରିୟା-କର
ଭୁଞ୍ଜାଇଲେ ମତେ ସ୍ନେହେ, ଉଠେ ମୋର ମନେ
ଅଗଣି ମାନବ ମ୍ଳାନ ଚିନ୍ତା ଅନଶନେ;
ପାଶେ ତାଙ୍କ କେହି ନାହିଁ ଦୟା କରି କରେ
ଦେବ ତାଙ୍କ ମୁଖେ ଅନ୍ନ । ଦୁଃଖ ସମୁଦ୍ରରେ
ମୋର ସ୍ୱାର୍ଥ ସୁଖ ବିନ୍ଦୁ ଲୁପ୍ତ ଲଭେ ଧୀରେ
ସ୍ପୃହା ହେ କିପାଇଁ ବାଣ୍ଟି ସୁଖ ଏ ବିଧିରେ ?

ଦିଅ ମତେ, ଶକ୍ତି ଦିଅ, ଦୀନ-ଦୁଃଖୀ ଜନେ
ସୁଖୀ ମୁଁ କରିବି ଭବେ, ଚିନ୍ତା ଅନଶନେ
ଅମୃତ ମୁଁ ଦିଏ ଆଣି, ବାସ-ବସ୍ତ୍ରହୀନେ
ପିନ୍ଧାଏ ମୁଁ ଚିନାଂଶୁକ; ଦିଅ ଏକ ଦିନେ
ଜଗତରୁ ଦୁଃଖ ମୁହିଁ ପୋଛିଦେବ କରେ
ଦେଖିବି ଆନନ୍ଦ ରେଖା ନିଖିଳ-ମୁଖରେ ।

---

# ବନ୍ଧନ

ସଂସାରର କର୍ମସ୍ରୋତେ, ଏ ଜୀବନ ଭସାଇବି ବୋଲି
କେତେବାର ମନେ କଲି, ବନ୍ଧନ ଯା' ମୋର ସବୁ ତୋଳି
ଅପୂତର ଦୁଃଖ ସୁଖେ ମିଶାଇବି ମୋର ଦୁଃଖ ସୁଖ
କେତେ ବୁକେ ହାତ ଥୋଇ, ପୋଛିଦେବି ସ୍ନେହେ କେତେ ମୁଖ
ପାରିଲି ମୁଁ କାହିଁ କହ ? ବନ୍ଧନ ତ ନ ପାରେ ଛିଣ୍ଡାଇ
ଯେତେ **ଅଗେ** ଯାଏ ମୁହିଁ ପଛୁ ମୋର ଟାଣେ କେହୁ ଥାଇ ।

ସେ ବନ୍ଧନ ଘୃଣ୍ୟ ନୁହେଁ, ମାୟା ନୁହେଁ, ନୁହେଁ ସେ ବଞ୍ଚନା
ପରମ ପବିତ୍ର ସେ ଯେ, ତା' ଦେଇ ତ ସ୍ୱର୍ଗେ ରଚନା
ହୁଏ ଏ ଧରଣୀ ପରେ । ଭଗିନୀର ପ୍ରଶାନ୍ତ ପ୍ରଣୟ,
ପରିଜନ-ପ୍ରତିବେଶୀ-ବନ୍ଧୁ ପ୍ରୀତି ଦେଇ ରସମୟ
ସେ ବନ୍ଧନ-ଜାଲ, ପୁଣି ସର୍ବୋପରି ଅପୂର୍ବ ଉନ୍ମାଦନୀ
ତୁମର ଅମୃତ-ସ୍ପର୍ଶ ସେ ଯେ ଶର ମାନସ-ରଞ୍ଜିନୀ,
କେମନ୍ତେ ଛୁଡ଼ିବ ତାରେ ? କେମନ୍ତେ ବା ଭାଙ୍ଗିବ ସେ ହେୟ
ଅନ୍ତରର ପ୍ରାଣ-ରସ ଯା'ର ପ୍ରିୟେ, ଅଟେ ଖାଦ୍ୟ ପେୟ ।

ଏ ବନ୍ଧନ ମଧ୍ୟେ ସଖି ପାଏ ନା କି କହ ଥରେ ଥରେ
ଦେବତାର ଅନୁଭବ ମୋର ଏହି ଜୀବନ ପଥରେ ?

# ଜୀବନ ଶିଖା

ଯାଏ ଯାଏ—ହେ ସ୍ୱଜନେ, ଥରେ ଥରେ ରୁହଁ ଯେବେ ମତେ
ଭାଷାମୟ ଚକ୍ଷୁ ଦେଇ, ପ୍ରାଣଭରା ଅନନ୍ତ ସଂକେତେ,

ଭାବେ ଏ ବନ୍ଧନ ନୁହେ ମାୟା, ଅଜ ଏ ଶରୀର ମାଟି,
ଗଭୀର ଅମୃତ ଧାରା ଏହା ତଳେ ଉଠୁଅଛି ଫାଟି;

ପ୍ରଣୟେ ସେ ସୁଧାଧାରା ନବ ନାରୀ ବାଣ୍ଟି ଏକ ଥରେ
ରଚନ୍ତି ନନ୍ଦନ ଏଥି ଧରଣୀର ପ୍ରାଣ-ନଦୀ ଧାରେ ।

ଗଭୀର-ପ୍ରଣୟ-ପାୟୀ ମୁହିଁ ତେଣୁ ମୋ କ୍ଷୁଦ୍ର ନନ୍ଦନ
ତେଜି ନାହିଁ ଯାଏ ଦୂରେ—ସୁଖ ଲଗେ ମୋତେ ଏ ବନ୍ଧନ ।

ତଥାପି ଶ୍ରବଣେ ବାଜେ ବେଳେ ବେଳେ କ୍ରନ୍ଦନ କାହାର
ଦରିଦ୍ର ପତିତ ଦୀନ ଭୋଗୁଅଛି କାହିଁ ଅତ୍ୟାଚାର

ଦେଶ ଦେଶ ଜାତି ଜାତି ସ୍ୱାର୍ଥପର ନିର୍ମମ ଶୋଷଣେ
ଅସହ୍ୟ ମରଣ ଦେଖି କି ଚିତ୍କାର କରେ କ୍ଷଣେ କ୍ଷଣେ ।

ମାତା କାନ୍ଦେ, ପୁତ୍ର କାନ୍ଦେ, ପ୍ରିୟ କାନ୍ଦେ ପ୍ରିୟାର ବିରହେ
ଅନ୍ନାଭାବେ ପୁଣି କାହିଁ ଈଶ୍ୱରର ପୁତ୍ର ପଡ଼ି ରହେ

ଅନାଦୃତେ ପଥ ପାର୍ଶ୍ୱେ । ବିଶ୍ୱେ ଯେତେ ଅନ୍ୟାୟ ତାହାର
ପ୍ରତିଧ୍ୱନି ବାଜେ କାନେ । ମୋ ନନ୍ଦନ ବନ ଗୃହଧାର

# ଜୀବନ ଗୀତା

ଥିଲି ଭଲେ ସେ ନନ୍ଦନେ । ପ୍ରାଣ ମୋର କେବେ ଯିବ ଭାସି
ଈଶ୍ୱର ନୟନ ଲୁହେ; ଅମୃତର ସ୍ରୋତେ ପ୍ରାଣ ହସି ।

ସେ ଅନ୍ୟାୟ-ଅନାଚାରେ ନିଜରେ ମୁଁ କରନ୍ତି କି ଭାଗୀ !
କିନ୍ତୁ ହାୟ ମୋର ମନ,—ନିତାନ୍ତହିଁ ଗୃହ-ଅନୁରାଗୀ,

ପାରେ ନା ତ, ପାରେ ନା ତ ମିଶି ଏ ଯେ ଲକ୍ଷ କୋଟି ସାଥେ
ପରକୁ ନିଜର ନାହିଁ କରେ କାହିଁ ଏ ଜୀବନ ପଥେ

ସେ ଗୃହେଁ ବାନ୍ଧବୀ-ବନ୍ଧୁ-ପ୍ରତିବେଶୀ-ସେନେହ ବନ୍ଧନେ
ରହିବ ମଗନ ରହି କୃତକୃତ୍ୟ କରିବ ଜୀବନେ

ମହତର ଗତି ଅଛୁ ବୁଝିବାକୁ ଈଶ୍ୱର ସନ୍ତାପ
କି କରିବ ଅକିଂଚନ ବୋଧିବାକୁ ବିରାଟ-ବିଳାପ ?

କ୍ଷୁଦ୍ର ମୁଁ ମୋ ସୁଖ ଗ୍ଲାନି କପାଁ ଶୁଣିଣି ଶୁଣେ ଈଶ୍ୱର କ୍ରନ୍ଦନ?
କେ ଡାକେ,'ଜାଗ ଯେ ମରେ ଛିଣ୍ଡାଅ ହେ ଭ୍ରମର ବନ୍ଧନ ?'

କେ କହିବ କିନ୍ତୁ କିନା, ସତ୍ୟ ପନ୍ଥା କାହିଁ ଅଛି କାହିଁ ?
ବନ୍ଧନ କାଟିବା ଇଚ୍ଛା, ଦୁଃଖ ଲାଗେ ପାରେ ନା ଛିଣ୍ଡାଇ ।

---

# ପ୍ରାଣ-ପକ୍ଷୀ

ପ୍ରାଣବନେ ପକ୍ଷୀ ଗାଏ ଅକୁଳ ରାଗିଣୀ
ବୁକୁ ସାର ବେଦନାରେ ଡାକେ କ୍ଷଣି କ୍ଷଣି

ଗଭୀର ଜୀବନ ବନେ କେଉଁ କୁଞ୍ଜ ତଳେ
କି ପକ୍ଷୀ ସେ କି ଯେ ଗାଏ ଏତେକ ବିକଳେ !

ଖୋଜି ଖୋଜି ଚହାଚହି କିଛି ନାହିଁ ପାଏ
ଜାଣେ ଖାଲି ପ୍ରାଣ-ବନେ ବିହଙ୍ଗମ ଗାଏ ।

ଯୁଗ ଯୁଗାନ୍ତରୁ ସେ ଗୋ ଜୀବନ-ପ୍ରବାସର
ଜନମେ ଜନମେ ସହଚର ସେ ମୋହର,

ପ୍ରାଣବନ ଅନ୍ତଃପୁରେ ନବ-ବଧୂ ପରି
ଓଢ଼ଣାରେ ମୁଖ ଢାଙ୍କି, ଅଖି ଜଳେ ଭରି

କାହାର ବିରହେ ସେ ଯେ ଧରିଅଛି ତାନ,
ଏଡ଼େ ବୁକୁଫଟା !—ମୋର ଭାଙ୍ଗିଯାଏ ପ୍ରାଣ ।

ଯୁଗ ଯୁଗ ଧରି ସେ ଯେ ବିଳପୁଛି ବସି
ନିଭୃତ ସେ ବନକୋଣେ,—ଦିନେ ମୁଁ ଭରସି.

ପଚାରିଲି, ହେ ବିଦେଶୀ କାହିଁ କାନ୍ଦ ନିତି ?
କି ବାସନା, କାହାସନେ ଏ ଗଭୀର ପ୍ରୀତି ?

# ଜୀବନ-ଚିତା

ଜଞ୍ଜାଳର ଅବସର ନାହିଁ ମୋର ମନେ
ଅବାଧରେ ଗାଉଯାଏ ପ୍ରାଣ-ପକ୍ଷୀ ବନେ ।
ତା ସ୍ନେହରେ ସିକ୍ତ ମୋର ସମସ୍ତ ଜୀବନ
ଜନମେ ଜନମେ ତେଣୁ ସାଥୀ ବିହଙ୍ଗମ ।

---

## ବିଶ୍ୱ ରୂପ

ଅନ୍ଧକାର ଦେବାଳୟେ, ପର୍ବତ କନ୍ଦରେ
କଠୋର ତପସ୍ୟା ସାଧି କପାଇଁ ଈଶ୍ୱରେ

ଖୋଜୁଥାନ୍ତି ଯୋଗୀ ଜନେ ? ଏହୁ ଦୃଶ୍ୟମାନ
ବଚନ ଧରଣୀ-ପରେ ତାଙ୍କର ସନ୍ଧାନ

ବ୍ୟର୍ଥ କି ହୋଇବ ହେଲେ ? ବେଣୁ ରହିଯାଏ
ଊର୍ଦ୍ଧ୍ୱେ, ଅଧେ, ଚତୁର୍ଦ୍ଦିଗେ, ଯହିଁ ମୁଁ ପଚାଏ

ଦୃଷ୍ଟି ମୋର, ତହିଁ ପାଏ ବିରାଟ ସତ୍କାର
ସତ୍ୟ-ସ୍ୱର୍ଗ ମୋ ଇନ୍ଦ୍ରିୟେ । ମୋ ପଦ-ସଞ୍ଚାର

ଯେ କୁଞ୍ଜ ରେଣୁରେ ହୁଏ, ତହିଁ ଭଗବାନ
ଓତପ୍ରୋତେଅଛନ୍ତି ରହି । ନରେ ଲମ୍ବମାନ

ତାରାଗଣେ ପୁଣି ସେହି । ତାଙ୍କୁ ଖୋଜିବାରେ
ପର୍ବତେ ପଶିବା କିପାଁ ? ମୋର ଗୃହଧାରେ

ଏ ଧରଣୀ ରନ୍ଧ୍ରେ ରନ୍ଧ୍ରେ, ଅଣୁ ଅଣୁ ଭେଦ
ଅଛନ୍ତି ସେ, ଖିଳ-ବିଶ୍ୱ ତାଙ୍କ ପୂଜା-ବେଦୀ ।

---

# ଦେବ-ପୂଜା

ପୁରୋହିତ, ଶୁଦ୍ଧପୁତ ହୋଇ, ଦେଉଳରେ ତା'ପୂଜା କର ହେ ?
ସୃଷ୍ଟି ଯାର ଉଦାର ଅନନ୍ତ, ସେ ଦଅଁ କି ଅନ୍ଧକାରେ ରହେ ?
ଅନ୍ଧକାରେ ଅଖି ବୁଜି ତାଙ୍କୁ, ଦେଖିବାରେ କିପାଁ ଏ ପ୍ରୟାସ
ଅଖି ମେଲି ଦେଖନା ଅନନ୍ତେ କି ସୁନ୍ଦର ତାହାର ପ୍ରକାଶ ।
ଅନ୍ତରରୁ ଅନ୍ତରୀକ୍ଷେ ବ୍ୟାପୀ ବିରାଜିତ ଯେ ଭୁବନେଶ୍ୱର
କ୍ଷୁଦ୍ର, ରୁଗ୍ଣ, ଅନ୍ଧକାର ଗୃହେ, ତାର କିପାଁ ଆରାଧନା କର ?

ଦେଖ ଦେଖ ଆଗେ ପଛେ ତବ, ଶତ ଶତ ନର ନାରାୟଣ
ଯାଙ୍କୁ ତୁମେ ପଛେ ଦେଇ ପେଲ୍, ଦେବତାରେ ଲଭିବ ପରିତ୍ରାଣ ?
ଦେବତାଙ୍କୁ ବାହାରେ ରଖିଲ, ଲୁଚିବାକୁ ଡକିଲ ତାହାରେ
କାରେ ତୁମେ ଗଲ ପୂଜିବାକୁ ଦେଉଳର କ୍ଷୁଦ୍ର ଅନ୍ଧକାରେ ?
ପାପ ଏ ଯେ, ପୁଣ୍ୟ କି କହିଲ, ସେ ପାପରୁ ମୁକ୍ତ ନୁହେ ଦେବତା
ଯେତେ ଦିଅ ପୂଜା ବା ଆରତି; ତେଣୁ ସେ ଯେ ନ କହୁଛି କଥା
ଏଇ ପାପେ ଜାଣ ହେ ଋତ୍ୱିକ, ଦେଖୁ କଲେ ଦେବତା ପ୍ରୟାଣ
ଆଜି ଖାଲି ଦେଉଳେ ଦେଉଳେ ବିରାଜିତ ଏ କାଷ୍ଠପାଷାଣ ।

ଏବେ କାଠ ପଥର ନ ପୂଜ, ଆସ ପୂଜ ଜୀବନ୍ତ ଦେବତା
ଯା ଅଖିରୁ ଲୁହ ପିବ ବନ୍ଧୁ, କହିଦେଲେ ପଡେ ମଧୁ କଥା ।

ବନ୍ଦ କର ମନ୍ତ୍ର ପାଠ ତବ, ବନ୍ଦ କର କର୍ପୂର ଆରତି
ଦେଉଳର ବାହାରେ ଦେବତା ହାତ ପାତି ଉଭା ରହିଛନ୍ତି ।

ଦେବ-ଭୋଗ ନିରନ୍ନରେ ଦିଅ, ଦେବ-ସେବା ହେଉ ମାନବରେ
ଦେବତାର ଦରଶନ ଲଭ, ମାନବର ପ୍ରତି ଘରେ ଘରେ ।

ସେ ପୂଜାରେ ମୂକ ଭଗବାନ, ବାକ୍‌ମୟ ତୁରିତେ ହୋଇବେ
ଦିଅଁ ହୋଇ ପ୍ରତି ପ୍ରତିବେଶୀ ନାରାୟଣୀ ବାଣୀ ଶୁଣାଇବେ ।

ଅୟି ଭକ୍ତ, ଅୟି ପୁରୋହିତ ନ ପଶ ହେ ଆଉ ଅନ୍ଧକାରେ
ବିଧାତାର ବିମଳ ଆଲୋକେ, ଖୋଜ ଆସି ମୂର୍ତ୍ତି ବିଧାତାରେ ।



# ମୂକ ଦେବତା

ହେ ମୂକ ଦେବତା,
ଦେଉଳ ଦୁଆର ଖୋଲ ହେ ଖୋଲ
ସତ୍ୟ ମିଥ୍ୟା କିବା ତୁମେ,
ଥରେ ବୋଲ ହେ ବୋଲ ।
ନିଷ୍ଠୁର ତୁମେ ଖୋଲିବନି ଜାଣେ
ବୃଥା ମୁଁ ଆଘାତ କରୁଛି ପାଷାଣେ

କେତେ ମୁଁ ଡାକିଲି ମନ୍ଦିର ଆଗେ ଭକତ-ଭୋଳ
କିଛି ହେଲେ ତାର ମୂଲ୍ୟ କି ନାହିଁ ? ଥରେ ହେ ବୋଲ ।

ଖୋଜୁଛି ତୁମରେ କେତେ ଏ ନୟନ ଅଶ୍ରୁ ଢାଳି
ହେ ବଧିର ତୁମେ ରହିଲ କେବଳ ମଉନ ମାଡ଼ି ।

ଶେଷେ ଆଜି ମନେ ସନ୍ଦେହ ଜାଗେ
ଗତେ ପୂଜାର ବ୍ୟର୍ଥତା ଲାଗେ

ଫେରୁଛି ମୁଁ ତବ ଦେଉଳୁ ମନ୍ଦେ ଚରଣ ଗୁଁଳି
ଗୁରୁ ଅଭିମାନ, ମନେ ସନ୍ଦେହ, ନୟନେ ବାରି ।

---

# ଆଲୋକ ମାଗେ

ଗଭୀର ନିରାଶାର          ତାମସ ଅନ୍ଧାରର
ଚିତ୍ତେ ବିକଳ ମୋ କରଇ
ଆଲୋକ ନାହିଁ କାହିଁ          ପଥେ କେ ସାଥୀ ନାହିଁ
ବିପଦ ଧୃତି ମୋର ହରଇ ।

କୃଷ୍ଣ-ବାରିଦର          ଗଭୀର ଗରଜନ
ପ୍ରବଳ ବତାସର          ପ୍ରଳୟ ସନସନ
ଏକାକୀ ପଥିକର, ନିଖିଳ ମରମ ଯେ ଥରଇ
ଗଭୀର ନିରାଶା ମୋ, ଚିତ୍ତେ କି ବିକଳ କରଇ ।

ଆଲୋକ ଦେଖା ପ୍ରଭୁ ଆଲୋକ ଦେଖାଅ ହେ
କୃଷ୍ଣ ବାରିଦରେ ବିଜୁଳି ଲେଖାଅ ହେ ।
ଜଡ଼-ଦାନବେ କ୍ଷୁଧାଁ ବିଶ୍ୱର ବିଡ଼ବାର
ଶଙ୍କା ପରାଜୟ କେବଳ ହେବ ସାର ।

ଗଭୀର ଭୟେ ତେଣୁ, ଚରଣ ପଛ କରି ଫେରଇ ।
ନିରାଶା ମୋ ନିଖିଳ ଚିତ୍ତେ କି ବିକଳ କରଇ ।

ଦେବତା ଧର ହାତ, ଆଲୋକ ଜାଳ ମୋର ପଥରେ
ଭଗ୍ନକାନ୍ତ ଏହି ଶ୍ରାନ୍ତ ପଥିକରେ ଥାନ ଦିଅ ହେ ତବ ରଥରେ ।

ଯଦି ସେ ଦୟା ନାହିଁ, ବକ୍ର ଭବ ଚାହିଁ, ଅଣଦେଖି
ଖେଞ୍ଚି ଅବସାଦ-ଚିହ୍ନ ଅସହାୟ
ପଥିକ ମଥା ପରେ ଢାଣ ଦେହ
ସେଥିରେ ନିର୍ଘଣାର ନିଠୁର ଅନାଗ୍ରହ ସରଣି
ଝାଁପି ଏ ଅସହାୟ ପଥିକ ଚଳିବଲେ ଶୃଙ୍ଖଳ ।

# ଆହୂତି

ତୁମର କରୁଣାର ଯୋଗ୍ୟ ନୁହେଁ ମୁଁ ହେ—,
ତୁମ କରୁଣା କୃପା ମାଗିବି
ଦେଇଛ ଯେଉଁ ଦୁଃଖ ନିବିଡ଼ ଦାବ-ଦାହ
ନୀରବେ ପ୍ରାଣେ ପ୍ରାଣେ ଭୋଗିବି ।
ତୁମର ଲୋକ ଯେତେ ସୁଭଗ ଗର୍ବସ୍ଥାନ
ତାଙ୍କୁ ମନୋମତ କରୁଣା କର ଦାନ
ଥିଲେହେଁ ଅଭିମାନ କରିବି ନାହିଁ ନାଥ
ଆପଣା ଶାନ୍ତିରେ ମରିବି
ତୁମର ସୁଖ ଲାଗି ସହି ମୁଁ ପାରେ ଯଦି
ତୁମ କୁଳିଶ-ବାଣ-କଷଣ
ସେହି ତ ଏ ଦୀନରେ ପରମ କରୁଣା, ହେ
ସୁଖଦ, ହୃଦୟ-ଦାବ-ଦହନ
ଅହଂକାର ମମ, ଶରତ ମେଘ ସମ
ବକ୍ର ଅଙ୍ଗ ନାଥ, ଶୁଭ୍ର ସଚେତନ
ପରମ ବିନୟରେ ଶାସନ ନେବି ମାନି
ତୁମର ବିଧି-ଜୟ ଗାଇବି ।

---

# ତୁମର ପ୍ରୟୋଜନ

ନିବିଡ଼ ଦୁଃଖାନଳେ ଜଳି ମୁଁ ମରେ ପଛେ
ତୁମରି ଲୀଳା ପରକାଶୁ ହେ
ନିବିଡ଼ ନିରାଶାର ଅନ୍ତ ଭେଦ ପ୍ରବେଶେ
ଗଭୀର ବିଶ୍ୱାସ ଆସୁ ହେ ।

ମୋର ଏ ଜୀବନର କ୍ଷୁଦ୍ର ନିଜ-କଥା
ମୋର ଏ ଆପଣାର ତୁଚ୍ଛ ପ୍ରାଣ-ବ୍ୟଥା
ସେ କୃପାଁ ଅତୁଳ ଲଭିବ ମହାଲୋକେ
ଫେରିବ ନେବ ତବ ପାଶୁ ହେ ।

ତୁମର ମବ-ସ୍ୱପ୍ନ ସୃଜନ ଗଢ଼ ପାଇଁ
ମରଣ ଯଦି ଲୋଡ଼ା ପଥରେ
ମୋ ପରି କୋଟି କୋଟି ପରାଣ ପ୍ରସ୍ତୁତ—
ପିଷ୍ଟ ହେବେ ତବ ପଦରେ ।

ଆଜି ମୋ ପ୍ରାଣେ ପ୍ରବେଶେ ସେହି ତ ଆୟୋଜନ
ବକ୍ଷେ ତବ ଲଗି ପ୍ରାଣର ଉନ୍ମନ
ମୋର ଏ ହୋମାନଳ-ଦଗ୍ଧ-ଶତଧୂଳି
ଲୋଡ଼ାରେ ତବ ହେଲେ ଆସୁ ହେ ।

———

# କୃତାର୍ଥ

ଦନ୍ଦ ପଛେ, ଦାନ୍ଦ ଦାହନେ
ମୋର, ଚିତାରୁ ବାହାରୁ ଅଲେକ
ମତେ, ପେଷ ପଛେ ଘୋର କଷଣେ
ମୋର ହସ ଦେଖୁଥାଉ ଭୂଲେକ ।

ପଛେ, ନର୍ମ୍ମେ ଘଷ ପାଷାଣେ
ଅବା ଫୁଟାଅ ତ୍ରିଶୂଳ ବଷାଣେ
ଚନ୍ଦନ ସମ ଗନ୍ଧ ଦଅ ମୋ ବିନାଶେ
ଉର୍ବର ହେଉ ମାଟି ମୋ ଶୋଣିତ ସାରଣେ ।

ମୋର, ଜୀବନ ଧୋଇଛ ଲୁହରେ
ମତେ, ପୋଡ଼ିଛ ରୁକ୍ଷ ଦୋହରେ
ଅନ୍ୟ ମାଗୁଣି ନାହିଁ ନାଥ ତମ ପଦ୍ମରେ
ଅର୍ଥ ଦଅ ଏ ନିରର୍ଥ ନୃହ ଦାହରେ ।

---

# ଦୂର୍ବାର ଆରାଧନା

ହେ ଲୋକଲୋଚନ, ଭୁବନବନର
କେଉଁ କୋଣରେ
କ୍ଷଣିକ ହେ ଦୀନ ଦୁବା ମୁଁ ନିତ ତୁମରେ ସ୍ମରେ ?

ଭାବେ ମୁଁ ଯେପରି,
ମୋହ ଲାଗି ଖାଲି ନିତ୍ୟ ଆସ
ଭୁଲୋକ ଅଲୋକ, ଜଗତେ ଫୁଟାଇ ଜୀବନ-ହାସ ।

ହେ ମୋର ପରମ, ଜାଣି କି ପାରୁଛ
ଛାହାରେ ଥରେ
ପଥ ପ୍ରାନ୍ତର ଦୁବା ଯେ ନିତ ତୁମରେ ସ୍ମରେ ?

ତୁମର ଅଲୋକ ବାହ୍ନି ବାହ୍ନି ମୋତ ପଶିଲେ ବନେ
ନ ଭୁଲେ ସେ କେବେ ଭେଟିବାକୁ ମତେ ଦୂର ଏ କୋଣେ
ହେ ପ୍ରେମିକ, ଖାଲି ମୋ ପାଇଁ ଯେପରି
ପେଷିଛ ତାରେ
ଭାବେ ମୁଁ ମଧୁର ଅହଙ୍କାରେ ।

ବିଦାୟ-ଲୋହିତ ଅଶ୍ରମାନେ ଘେନି ଦେଖିଲେ ଧନ୍ୟ
ମୁଁ ଭାବେ ତୁମେ ହେ ଖାଲି ମୋହଲାଗି ବ୍ୟଥିତ ପଣ୍ୟ ।
ନିଶା ଅବସାନେ ଆଲୋକର ହାସ
ମୋ ପାଇଁ ଖାଲି
ବୋଲି ଭାବି, ନମେ ଶିଶିର ଢାଳି ।

ସତ୍ୟ କି ଏ ଯେ, ସତ୍ୟ କି ଏ ଯେ ବୋଲି କହ ସ୍ୱାମୀ,
ନିବିଡ଼ ଏ ପୂଜା ଅବହେଳାତର ଅଛି କି ଜାଣି ?
ହେ ମହା-ପୁରୁଷ ତବ ପଦତଳେ
ପାରେ କି ଢାଳି
ବିନା ଅପମାନେ କ୍ଷୁଦ୍ର ତାହାର ହୃଦୟୁ ବାରି ?

ବୋଲିନ ହେ ନାଥ 'ଜାଣେନ ମୁଁ ତୋତେ' 'କିଏ ସେ ତୁମ୍ଭ ?'
ହୃଦୟୁ ଫାଟିବ, ଜୀବନ ଲୋଟିବ ମରମ ଦମ୍ଭ
ନ ଜାଣି ହେ ପଛେ, ଜାଣି ନା ଯଦି ବା
କହନା ତାହା
ଆଜି ମୋର ଏହି ପୂଜାର ସ୍ୱପ୍ନ, ପ୍ରୀତିର ମାୟା

# ପ୍ରଣୟୀ

ବର୍ଷଭରି ଏ ପ୍ରଣୟ ମୁଁ କାହାରେ ଦେବି ଗୋ,
ବଡ଼ ଇଚ୍ଛା ଉଠେ ମନେ ମନେ ଦିନ ରାତି,
ଅଶ୍ରୁ ନିଗାଡ଼ି, କାହାର ଚରଣ ସେବି ଗୋ
ସଜଳ ପ୍ରେମ ମୋ ପୁଲକିବ ଡାକି 'ସାଥୀ' ।

ପିଅଲ ଉଛୁର ଉଛୁଳେ ମମ ଜୀବନ,
ତାହା କର-ପୃଷ୍ଠେ ଢାଳିଦେବି ସଖା-ସୋହାଗ,
ତାହାରେ ପାଇ ମୁଁ ଭୁଲିଯିବି ଜନ୍ମ ମରଣ,
ଜୀବନ ଲାଗିବ ମଧୁର, ଗଭୀର ସରାଗେ ।

ବସନ୍ତ ଆଜି ମଧୁର କରିଛି ଧରଣୀ
ମଳୟ ମନ୍ଦ, ଚମ୍ପି କୁସୁମ ସୁରଭି ।
ଆମ୍ର-ବକୁଳ-ମଦାଳସୀ ପିକ-ରମଣୀ
ପ୍ରଣୟୀ ପାଇଁକି ଗାଉଛି ମହୁଆ ପୂରବୀ ।

ବାତାୟନ ଦେଇ ଗନ୍ଧ-ମଧୁର ଦକ୍ଷିଣା
ପରଶି ଅଙ୍ଗ, ଥରି ଏ ନିଖିଳ ସୃଷ୍ଟି,
ଅନ୍ତର-ପୁରେ ଖୋଜଇ ତରୁଣୀ ନବୀନା ।
ଏ ମଧୁର କାଳେ ଲୁବ୍ଧ-ହୃଦୟର ସାଥୀ ।

ତରୁଣୀ ଜୀବନ ଝରଇ ପରି ଗୋ ଲୋତକେ
ଅଦ୍ୟ-ମଳୟେ କାନ୍ଦେ ମୋ ବୃକ୍ଷ-ଷୋଡ଼ଶୀ,
ସେ ଗୃହେଁ ଜୀବନ ଶଙ୍କଦେବ କଥା ପଦକେ
କହିବ ଯେ ଖାଲି "ତୁମରି ମୁଁ ସମବୟସୀ ।"

ବସନ୍ତେ ଅଙ୍କ କେ ଅଛ ଅସ ଗୋ ନାଗର,
ପ୍ରଣୟ-ବଧୂର ତରୁଣୀର ନେବ ସୁଅଗ,
ତବ ଅବଗାହେ ଧନ୍ୟ ହେଉ ଏ ସାଗର,
ତୁମର ଶ୍ରବଣେ ଧନ୍ୟ ହେଉ ତା ବେହାଗ ।

× × × ×

ସନ୍ଧ୍ୟା ଯେ ହେଲା, ନଇଲେ ତ କେହି ପ୍ରଣୟୀ,
କ୍ଲାନ୍ତ-କଣ୍ଠ କୋକିଳ ଗଳଇ ନୀଡ଼େ,
ଧାଗନ୍ତେ ଦଗ-ମଧୁର ମଳୟ ଚଳଇ,
କେଳି-ସାଥୀ ଦେଖ ହଂସ ଫେରଇ ତୀରେ ।

ଅଗଣ୍ୟ ସନ୍ଧ୍ୟା ଯାପିଛୁ ଏକାକୀ ଦୀନ ମୁଁ,
କେହି ନ ଅପିଛୁ କଣ୍ଠେ ମୋ ବାହୁ ଭିଡ଼ନେ,
ମରଣ ନାହିଁ ଗୋ ମୁଖର ଏ ଘୋର-ସରମୁଁ ?
ସାଥୀ-ସଙ୍ଗାତ କାହାର ନାହିଁ ଏ ଭୁବନେ ?

ଜନ୍ମ ଜନ୍ମ କର ଧରି ମୁଁ ଅଣିଛୁ ଦେବତା
ଜନ୍ମ ଜନ୍ମ ଭରି ଜଗୁଛୁ ବୁକୁରେ ଥିଲା ଯା,
ଜନ୍ମାନ୍ତର ହେଲେ ନ ହେଲା ମୋଠାରେ ମମତା
ସକଳେ ଦେଖିଲେ ଦୀନ ଦରିଦ୍ର ପରି ଯା ।

କେତେଥର ଅଧା ବୁଝାଇଲି ନିଜେ ନିଜରେ,
"ଅପଦାର୍ଥର ବାନ୍ଧବ କାହିଁ ଜଗତେ ?"
ସୁମରି ବିଳପେ ବୁକୁ-ବଧୂ ଅଭିମାନରେ ।
"କିପାଁ ଦେବେ ବାନ୍ଧି ଦେଲା ଏ ବିଳାପ ବନ୍ଧନେ ?"

ପରିହାସ ସେ ଗୋ ! ବଡ଼ ପରିହାସୀ ଦଇବ,
ଲକ୍ଷ ବର୍ଷ ଲକ୍ଷ ପୋଛୁବାର ନାହିଁ ବିଧାନ,
ପଥରର କପାଳ ଦେବ-ଭୋଗ ଆଶା ହୋଇବ,
ନିଜ ଇଚ୍ଛାମତେ ବିଧାତାର ସବୁ ଭିଆଣ ।

ସବୁ ଭିଆଣରୁ ପୀରତି-ଭିଆଣ କଠିନ,
ଗଳପି ବସିଲେ ବୋଧିବାର ଲୋକ ନ ଥାଏ,
କଠିନ ଅକ୍ଷରି ବାନ୍ଧବା ଲକ୍ଷ ଅଙ୍ଗିର,
ଯେତେ ପୋଛ ପୁଣି, ସେତିକି ଗୋ ବୁକୁ ବଥାଏ ।

× × × ×

ସଜଳ ସନ୍ଧ୍ୟା ପରି ମୁଁ ଅଛି ଗୋ ଝଲପେ
ବସନ୍ତ ଏଇ ନବଜାତ-ଘାସ-ଅର୍ଚ୍ଚନେ,
ଅଙ୍ଗ ଗୃହେ ଏ ଶାନ୍ତ କୋମଳ ତଳପେ
ଥରେକ ଦେହର ସରସ ନିବିଡ଼ ମିଳନେ ।

ବନ୍ଧୁ କେ ଶୁନ୍ହିଁ, ଅଭିସାର କର ଏଠାରେ,
ବାସକ-ସଜ୍ଜା ରହିବି ମୁଁ ସାରା ଯାମିନୀ,
ଆସ କେ ଆସିବ, ଝବସି-କୁସୁମ-ପରଶେ
ଉଦ୍‌ବେଳ କରି ହୃଦୟ ଏ, ବର-କାମିନୀ ।

ତରୁଣ ଆସିଲେ କଂକଣଧ୍ୱନି ଶୁଣିବ,
ତରୁଣୀ ଆସିଲେ ନୂପୁର ବାଜିବ ଅଦୂରେ,
ତରୁଣ ଆସିଲେ ଗୀତେ ଗୁଣ ତାର ଗୁଣିବ,
ତରୁଣୀ ଆସିଲେ ତୋଳି ନେବି ତାକୁ ବୁକୁରେ ।

ଯେ ଆସିବ ଆସୁ, ନିଃଶେଷ କରି ପାନ
ପିଆଇବି ତାକୁ ସରସ ଜୀବନ ମଦିରା,
ସାଥୀ ଯୋଗେ ଆଜ ପ୍ରାଣ ମୋର, ଏ ମୋ ଗାନ
ଉତ୍ପ୍ଳାବି ଉଠେ ଚସର ଝଟିମା ଗଭୀର ।

---

# ଅନୁତପ୍ତ

ମରଣ ପଛେ ପଛେ ଜୀବନ ବୋଲି ଧାଇଁ
ଜୀବନ-ଧନମାନ ପ୍ରଭୁ ହେ ମୋର ଗଲା
ଚନ୍ଦନ ବୋଲି ମୁଁ ଯେ ପଙ୍କରେ ହେଲି ବାଇ
ପଡ଼ି ମୁଁ ଭାବିଲି ମୋ ସବୁଲା ବାଟଚଲା
ଜୀବନ-ସାର ଦେଇ ମୃତ୍ତିକା ଅଛି କିଣି
କି ହୀନ କର୍ଦ୍ଦମରେ ଭରିଲି ମୋ ପସରା ।

ପ୍ରଦୀପ ନ ଜାଳି ମୁଁ ଛଇଳ ଦେଲି ଢାଳି
ଅନ୍ଧାର ଆଜି, ମୋର ନୟନେ ଘେରି ରହେ
ସନ୍ଧ୍ୟା କି ଛାୟା ଆଉ ଅନ୍ଧାରେ ନୁହେଁ ଦାଶ
ଛାୟାକୁ ସତ ଭ୍ରମେ ଯା କି ମୋ ପ୍ରାଣ ଦହେ ।
ଆଜି ମୁଁ ଭାବେ କିପାଁ ଛଇଳ ଦେଲି ଢାଳି
ଅନଳ-ଅନୁତାପ-ଦାହ ମୋ' ହୃଦୟ ସହେ ।

ପତନ ହେଲେ ଜଣେ ଉଠାଏ ଆସି ପର
ପଙ୍କିଳ ହେଲେ ଦେହ ଦିଏ ସେ ହାତେ ଧୋଇ
ଶୃଙ୍ଖଳ ପାଶ ଦେଖି ଛଇଲେ ଭରେ ସର
ବଦନ ଦିଏ ପୋଛି, ଲୋତକ ଗଲେ ବୋହି
ମୋ ପାଇଁ ସେ ଦୟାଳୁ ପୁରୁଷ ଗଲେ କାହିଁ ?
ବୃଥା କି ମୋ ନୟନ-ଲୋତକ ଯିବ ବୋହି ?

## ଜୀବନ ଚିନ୍ତା

ପ୍ରଭୁ ହେ ଅଛି କାହିଁ ପ୍ରଦୀପ ମୋର ଘର
ତଇଲ ତବ ଆଜ ନ ଦେବ ତୁମେ ଢାଳି
ଏଥର ତବ ଦାନ ନ ହେବ ହେ ବିଫଳ
ଉଠାଅ ହାତ ଧରି, ଯିବି ମୁଁ ନିଜେ ଚାଲି ।
ଚନ୍ଦନେ ପଙ୍କେ ବୁଝିଲିଣି ମୁଁ ଭେଦାଭେଦ
ପରୀକ୍ଷା କର ପ୍ରଭୁ ପାରେ କି ନାହିଁ ବାରି ।

———

# ଦୁର୍ବଳ ସୈନିକ

ମୋତେ କିପାଁ ତବ ସୈନିକ କଲ ହେ ସେନାପତି
କରି ମୋ ଜୀବନ ଅବସାଦ-ମଗ୍ନ ଅବଳ ଅତି ?
କେ ଧରେ ପତାକା, କେ ଧରେ ଅସ୍ତ୍ର
କେ ଧରେ ଜ୍ଞାନ-ଧର୍ମ-ଶସ୍ତ୍ର
ତା ଦେଖି ତୁମର ଚକ୍ଷୁଅଛୁ ରଣେ ହେ ମହାମତି
ମତେ କିପାଁ ଠିଅ କଲ ରଣଭୂମେ, ମୋର କି ଅଛୁ ?

ଯେଉଁମାନେ ମୋତେ ଭାବୁଥିଲେ ବୀର ଗୁଣ୍ଡିଲେ ଆଶା
କିବା ଅପମାନ ବହୁ ତ ! ତା'ର ମୁଁ ନ ପାଏ ଭାଷା ।
ସଂଗ୍ରାମେ ହାରି କାହିଁ ଯିବ ଏବେ ମୋର କି ଗତି ?
ଏଇଥି ପାଇଁ କି କଲ ସୈନିକ ହେ ସେନାପତି ?

ଭଗ୍ନଜାନୁ ମୁଁ ଶକ୍ତି ଯାଚନା ଚରଣେ କରେ,
ତୁମରି ଅଗ୍ରେ ତୁମର ପୂଜା ଜପୁ ମୁଁ କରେ,
ମୋର ନାମେ ଥରେ ଉଠାଅ ତୁମର ବିଜୟ-ଛତି
ଅନନ୍ତେ ତବ କୀର୍ତ୍ତି ଗାଇବ ହେ ସେନାପତି ।

---

# ତୀର୍ଥ-ଧୂଳି

ବଡ଼ ଦାଣ୍ଡେ ଉଡ଼େ ବାଲି ଧୂଳି ଅବିରତ
ବିଳାସୀର ଅଙ୍ଗେ ପଡ଼ି କରଇ ବିବ୍ରତ ।

"ଏଠିକି ମନୁଷ୍ୟ ରହେ ? ଅସିଲି କପାଳିଁ"
ବୋଲି ସେ ବିଳାସୀ ଦୁଃଖେ ମୁଖ ପୋଛୁଥାଇ ।

ସେଇପଥେ ଭକ୍ତ ଯାଏ, ଅନନ୍ଦ-ଗଦ୍‌ଗଦ
ଅନନ୍ଦେ ଭୂମିରେ ତା'ର  ପଡ଼ୁନାହିଁ ପାଦ ।

'ଏ ଧୂଳି ପଡ଼ୁ ମୋ ମୁଣ୍ଡେ ଜନ୍ମ ଜନ୍ମାନ୍ତର ।'
ବୋଲି ସେ ଧୂଳିରେ ଧୁଏ ଶୀର୍ଣ୍ଣ କଳେବର ।

---

# ରିକ୍ତତାର ଗୌରବ

ଭାଗ୍ୟଭାର ଯା ନ ଦେଇଛ ମାଥେ
ଶ୍ରେଷ୍ଠ ଅଶିଷ ମୋତେ
ନୁଅଇଁ ପାରିବି ସହଜେ ଏ ଶିର
ହେ ନାଥ ତୋ ପଦ ତଳେ ।

ଅସନ, ଭୂଷଣ ନ ଦେଇ କରିଛ
ଜୀବନ ମୁକ୍ତ-ଭାର
ହେ ଦେବ ସେ ଯୋଗୁଁ ଦେଖିଲେ ତୁମର
ସହଜ ମୋ ଅଭିସାର ।

ଭିଡ଼ିବାକୁ ପଛୁ ବଞ୍ଚନା ଯେ କଷ୍ଟ,
ବିପୁଳ ଏ ଜଗତରେ
ପରମ ଭାଗ୍ୟ ମୋରେ ।

ଶୂନ୍ୟ ରଖିଛ ପାତ୍ର ମୋର ଯା,
କୃତଜ୍ଞ ସେଥିପାଇଁ
ପୂର୍ଣ୍ଣ ହୋଇବ କାଲେ ବା ତୋହର
କରୁଣା-କଣିକା ପାଇ ।

ତିକ୍ତ ଜୀବନ ଦେଇ, ଯା ତୋଲାଗି
ଝଁଟାଇଲି ଲୋତକରେ ।
ଭାଗ୍ୟ ସେ ଜୀବନରେ ।

ବହୁଦିନ ପରେ ଜାଣିଲି ତଥ୍ୟ
ସତ୍ୟେ ପାଇଲି ତୃପ୍ତି,
ଦୁର୍ଦ୍ଦିନେ ବର୍ଷା ତାଙ୍କରି ଭ୍ରମରେ
ଲୋତକେ ନେଇ ଭୁଞ୍ଜ ।

ନିସଙ୍ଗ କରି ସଙ୍ଗ ଭ୍ରମର
ଖୋଜାଇଲି ଅଖିଜଳେ,
ଭାଗ୍ୟ କହିବ କାରେ ?

---

# ଅଶ୍ରୁ-ପୂଜା

ଅଶ୍ରୁ ସଜଳ ନୟନେ କେବଳ
ମିଳେ କି ତମର ଦେଖା ?
ଦୈନ୍ୟ-ଶବଳ ଲଲାଟରେ
କରୁଣା ତମର ଲେଖା ?
ସ୍ନେହ କି ତମର, ବଞ୍ଚଣେ ନାଥ
ହୃଦର ମନ୍ଥନେ
ମୁମୂର୍ଷୁରେ ବାନ୍ଧ କି ଅବେଗ
ବ୍ୟଥାର ବନ୍ଧନେ ?

ବିଳାପ-ଘନ ଶର ହେ ତବ ଦେଉଳ ଚତ୍ୱର
ପ୍ରାର୍ଥନାର କରୁଣ-ରାଗେ ଅକୂଳ ମନ୍ଥର ।
ଅଶ୍ରୁ-ଅର୍ଘ୍ୟ ଲୋଡ଼ା କି ଶର ଚରଣ ଅରାଧନେ
ଏଇକି ପରମ ଆଶୀର୍ବାଦ, ତମର ଭକ୍ତଜନେ ?
ଜୀବନ ମମ ଘୋର ଯେ ନାଥ, ଚନ୍ଦନ ପରିରେ
ସିକ୍ତ କର ଅଙ୍ଗ ମୋର, ଲଞ୍ଛନା ବାଦରେ
ନୟନ ମମ ଓଦାଅ ନିତ୍ୟ, ଲୋତକ ଅଞ୍ଜନେ
ନେବ କି ଧରି କେବେକେ ତବ, ଦେଉଳ ଅଙ୍ଗନେ ?

---

# ସମର ବିମୁଖ

ବହିବା ଦୁର୍ବଳ ସ୍କନ୍ଧେ ଦୁର୍ବହର ଗୂପ
ଜୀବନେ ତାହାହିଁ ଗୁରୁତର ଅଭିଶାପ ।
କର୍କଶ କଠୋର ବାଣୀ ଯନ୍ତ୍ର ଦରବାର
ପାଇବ କି ଝାଣି ତାହା ମୃଦୁ ବୀଣା ତାର ?
ମାଟିର ପ୍ରଦୀପ, ସେ ତ ଜୀବ କୁଟୀରର
କିପରି ସେ ଅଲଙ୍କିବ ରାଜ-ଦରବାର ?
କୁଣ୍ଠିତ ଜୀବନ ଯୁଦ୍ଧେ ଜୟୀହେବା ପାଇଁ
ଶ୍ରଦ୍ଧା, ଶକ୍ତି କିଛି ହେଲେ ମୋର ଥିଲା ନାହିଁ,

କେ ଦେଲା କିପାଇଁ ଠେଲି ଏ ମହା ଉଦଧିଲେ
ଆଜ ଚୂର୍ଣ୍ଣ ବିକଳ ମୁଁ ବାହାରେ ଅନ୍ତରେ ।

ସର୍ବାଙ୍ଗେ ମୋ ଜୀବନର କ୍ରୂର କଷାଘାତ
ଷଡ-ଚକ୍ର ମୋର ଧ୍ରୁବ, ମୋ ଲେଖକପାତ ।

ହୋଇ ଭଗ୍ନ, ଭ୍ରଷ୍ଟ, କ୍ଳାନ୍ତ, ଜୀବନ-ସମରେ
ଏହୁ ଭାଗ୍ୟ ଗୃହେ ମୁହିଁ ଆଜ୍ଞା ମରମରେ

ଦୂରେ ନରପାଦ ଯହିଁ ନାହିଁ ପାରେ ପଶି
କେଉଁ ଦୂର ବାରିଧିର ବେଳାବନେ ବସି,

ଚାହିଁ ଚାହିଁ ଆକାଶର ନୀଳ ଛତ୍ର ତଳେ
ମେଘମାଳା ଭାସିବାର ସମୀର କୌଶଳେ,
ବନସ୍ପତି ଛାୟାତଳେ, ଘାସର ଆସନେ
ବସି ମୁଁ ଭାବିବି ଦୁଃଖ ଉଦାସୀନ ମନେ ।
ଅଥବା ବେଳାରେ ଶିଳେ ଶୋଇ ବସ ଭରି
ଭୁଲିଯିବି ଜଗତର ଦବା-ବିଭାବରୀ;
ବିସ୍ମରିବି ନୁହେଁ ମୁହିଁ ଜୀବ ସଂସାରର
ମୁଁ ଏକ ମଳୟଧାରା, ଧ୍ୱନି କୋକିଳର ।

୨

ଜନତା ନୟନ ଅଗେ ଅପଣା ପ୍ରତିମା
କେହିଁମତେ ହେଲେ ଥୋଇ, ଅପଣା ମହିମା
ଦେଖାଇବା ଲାଗି ଯେତ୍ନ ଧରନ୍ତି ଜୀବନ
ମୁଁ ତ ସେ ଗୋଷ୍ଠୀର ଅଙ୍ଗ ନୁହେଁ କଦାଚନ ।
ଜଗତର ଅଜାଣତେ ଅପଣା ସ୍ୱପନେ
କୁଟୀର ତୋଳିବା ଆଶା ପୋଷିଥିଲି ମନେ ।
ଜନତା ନୟନ ଅଗେ ଉଚ୍ଚ ହେବା ଅପି
ଦଶଜଣି ସହ ସୃଷ୍ଟି ଗୌରବ ମନାପି,

ଅପୂତର ସ୍ମୃତ, ଜନତାର କରତାଳି
ଏ ସବୁ ଲଗି ମୁଁ କେବେ ନ ଥିଲି ତ ଭାଳି !
ଲୁଚି ପ୍ରତିକୂଳେ ଚଳାଇବା ଏ ଜୀବନ
ଜୀବନେ ଅଛେ ସେ ନିଷ୍ଠୁରତମ ନିର୍ଯ୍ୟାତନ ।
ଭାଙ୍ଗି ଦେଇ ମୋ-ସ୍ୱପନ-ନିଭୃତ-କୁଟୀର
ବିଧାତା, ଜୀବନେ କିପାଁ କଲେ ମୋ ଅସ୍ଥିର ।
ଅଶାନ୍ତନ, ଅଶ୍ରାନ୍ତନ ଅଜ୍ଞ ପଥ ପରେ
ଛୁଡ଼ା ହୋଇ ମୁହିଁ ଜନନେନେ ଭସ୍ମ କରେ ।
ଯାଏଁ ଚୂଲି ସେହି ସ୍ଥାନେ ପାଇବି ନିସ୍ତାର
ନ ଥିବ ଯେଉଁଠି ଜୀବନର ଅତ୍ୟାଚାର ।

୩

ବୋଲିବେ କେ, କ୍ଷୁଦ୍ର ମାନବର ସଙ୍ଗ ସୁଖ
ଯିବା କେଉଁ ବେଳାଭୂମେ ହୋଇଣ ବିମୁଖ
ସଂସାରର କୋଳାହଳେ, ଜନତା-ଜଞ୍ଜାଳେ;
ଘୋର ଦୁର୍ବଳତା ଏ ଯେ କବି ତୁମ୍ଭଠାରେ ।
ମାନବର ଦୁଃଖେ ସୁଖେ ମିଶାଇ ଜୀବନ
ଜୀବନ-ସମରେ କର ସ୍ୱେଦ ବିସର୍ଜନ,

ଦଳିତ-ଦୁର୍ବଳ ବ୍ୟଥା ଅନୁଭବ ପ୍ରାଣେ
ସହୁ ଦମ୍ଭ-ମୂର୍ଖତାର କ୍ରୂର ଅପମାନେ,
ଦେଖାଅ ମୁକ୍ତିର ପଥ, ପନ୍ଥା ଉଦ୍ଧାରର
ପଛେ ଯେ ଆସିବେ ବାଟ ଚାହିଁ ତାହାଙ୍କର ।

୪

ଏକା ଏକା ଅଜ୍ଞ ଏ ଯେ ଜୀବନ-ପ୍ରୟାଣ
ଦେଖାଏ କି ତାହା କବି-ଦୁର୍ବଳ ପରାଣ ?
ଧରଣୀରେ ଚିରନ୍ତନ ଲାଗିଛି ସମର
ଯାହାଲାଗି ତାହା ଅତି ଅକିଞ୍ଚିତକର ।
କାଞ୍ଚନର ବଞ୍ଚନାରେ ମୋହିତ ଜଗତ
ତାହାର ତୁଳାରେ କିଏ ଲଘୁ, କେ ମହତ ।
ମୋର କରପୃଷ୍ଠେ ତାହା ନାହିଁ ଥିଲା ଯେଣୁ,
ଚୁମ୍ବିବାକୁ ହେଲା ମତେ ମୂର୍ଖପଦ ରେଣୁ ।
କାଞ୍ଚନ ସମରେ ପଶି ଜୀବନ ଲାଞ୍ଛିତ
କରିବାକୁ ନାହିଁ ମୋର ମାନସ କିଞ୍ଚିତ ।
ଅଥବା ପ୍ରାଧାନ୍ୟ-ଯଶ, ଯାହା କାଳନୀତରେ
ଜଡ଼ି, ଫାଟି ଚରନ୍ତି ନିତେ ଅବନୀରେ,
ତା ଲାଗି ପାଗଳ ପରି ଝମ୍ପିବା ଜୀବନ
ଅନୁମୋଦନ କରେ କେବେ କବି ମନ ?

## ଜୀବନ-ଶିଖା

ତେଣୁ ଆଜି ସେ ଅଶ୍ରୁ ମୋ ବଦନ ଫେରାଇ,
ସୁଦୂର ସାଗର ତୀର ବେଳାବନେ ଚାହିଁ ।
ଗମନେ ବାସନା ମମ ରୁଦ୍ଧବ୍ୟଥା ସହ
ଜୀବନ-ଗଞ୍ଜଣା ଯେଣୁ ହେଲଣି ଦୁର୍ବହ ।
କୋଟି କୋଟି ନରନାରୀ ମତ୍ତ ଯାହା ଲାଗି
ଭବ ଶତ୍ରୁ ହୋଇ ଯଦ ତଦ୍ଧିରେ ବିରାଗୀ,
ପଛ କରି ତାକୁ, ଚଳେ ଦରିଦ୍ର କୁଟୀରେ
ହୀନୁ ବୋଲି ନିନ୍ଦା କିଏ ଭୈରବ ରବରେ ?
ଜନତାରେ ରହୁ ଅବା ବଜାନ୍ତ ମୋ ବେଣୁ
ବ୍ୟଥାର ଅଶ୍ରୁରେ ଓଦା ଭବ ପଥରେଣୁ,
ଜନତା ହସିବ ମତେ ଅଙ୍ଗୁଳି ଦେଖାଇ
ନାରୀ ପରି ଏ କେଉଁଠା କାନ୍ଦୁଛି କିପାଇଁ ?
ବେଳେ ହେଲେ ଭାବନ୍ତା କି ଏ ମୂର୍ଖ ଜନତା
କାନ୍ଦିବାକୁ ଜଗତରେ ଅଛୁ ଏତେ ବ୍ୟଥା ।
ଅଥବା ବୀଣାରେ ଦେବି ରୁଦ୍ର ଅଭିଶାପ
ସମାଜ-ସଂହାରକାରୀ ବିପ୍ଳବ-ଆଳାପ,
କହିବି ବିନାଶ କର ଧନର ସଂସାର
ଦରିଦ୍ର ସଂସାର ଲାଗି କାଟ ନୂଆ ଗାର,

କିନ୍ତୁ ଫଳ ସେହି କଥା—ଦଳେ ଅତ୍ୟାଗ୍ରହୀ
ତଉ ଅଭ୍ ଦଳେ ମାନ ଅଣୀବା ଢଙ୍କାର ।
ଦଳେ ଲୋକ ସବୁବେଳେ ଥିବେ ଜଗତରେ
ଉଠିବେ ଯେ ମାଡ଼ି ଦଳି ଅନଙ୍କୁ ଉପରେ;
ତାଙ୍କ ପଦତଳେ ଥିବେ ମୋପରି ଅପୂତ
ମୁଣ୍ଡପରେ ଉଡୁଥିବ ପତାକା ବହୁତ—
ପ୍ରେମ-ପ୍ରକୃତୈରସ୍ୱାନ୍-ସାମ୍ୟ-ଶ୍ରମିକର,
ଅସଲେ ସେ ମେଣ୍ଟ ଦଳେ ଓକାଲତଙ୍କର ।
ତେଣୁ ଅଳ୍ପ ମୋ ବାସନା, ଯାଇ ଦୂର ବନେ
ତୃଣ-ଶେଯ ବସି ନିଜ ସଙ୍ଗ ନିଛାଥନେ
ରଚିବି ଗାଇବି ଗୀତ ଇଚ୍ଛା ଅନୁସର
ବଚନ ରଚିବି ତନ୍ତ୍ର ଲେଖକରେ ଭରି ।
ଥିବ ଯଦି ସେ ଗୀତରେ ଦଗ୍ଧ ହାହାକାର
ମୋ ପ୍ରାଣ ବ୍ୟଥିତାମୟ ତପ୍ତ ଅଶ୍ରୁଧାର,
ମୋ ପରି ପରାସ୍ତ ଯେତେ ଜୀବନ ସଂଗ୍ରାମେ
ବାଜିଯାଉରେ ମୋ ସଙ୍ଗୀତ ଭାଳେ ତାଙ୍କ ପ୍ରାଣେ ।
ହେଉ ତାହା ସିଦ୍ଧି ଏତ, ଏ ବ୍ୟର୍ଥ ଜୀବନେ
ଭଗ୍ନ ତୃଣ ଲଘୁ ହେଲେ କାହାର ଇନ୍ଧନେ ।

---

# ଆତତାୟୀ

ଅର୍ଦ୍ଧରାତ୍ରି ।—

ଅନ୍ଧଫେନ ଅରମ୍ଭିଛୁ ମୃତ୍ୟୁ କିମ୍ବା ତାର,
କ୍ରମେ ଜଡ଼ ଦେହେ ମୋର, ହୋଇଆସେ, ଶୋଣିତର ଧାର ।

ଅଜ ତେଜର ଶୁଭ୍ର ନୁହେଁ, ଶେଷ କରେ ମୋ ଦୁଃଖ ଜୀବନ,
ଜୀବନେ ଯେ ପ୍ରିୟ ମମ, ଦେଖ ତାଙ୍କ ନିଷ୍ଠୁର ମରଣ ।

ଶୋଇଛନ୍ତି ମାତା ପୁଅ ।—ଧୀରେ ଜଳେ କେରୋସିନୀ ଦୀପ,
ଅଧା ଅଧା ମୁଖ ତାଙ୍କ ଦେଖାଯାଏ ଦୁଆର ସମୀପ—

ଦୁଆର ଦେଇଛି କିଳି, ବନ୍ଦ ସବୁ ଭିତର ବାହାର,
କେହି ଶୁଣି ନ ପାରିବ, କଲେ କେହି ଭିତରୁ ଚିତ୍କାର ।

ଦୁହିଁଙ୍କୁ ଦେଇଛି ନିଶା ପାଣିପୂରେ, ଶାଠ୍ୟେ କହି ପଣା,
କ୍ଷୁଧା-ଅବସନ୍ନ ଦେହେ ଲାଗିଅଛି ନିଦ୍ରାର ପ୍ରେରଣା ।

ତୀକ୍ଷ୍ଣ ଛୁରି ହାତେ ମୋର—ଆଶା କରେ ଏକ ଏକ ଚୋଟେ
ଶେଷ ମୁଁ କରିବି ତାଙ୍କୁ, ଦୁଃଖ ଶେଷ ହୋଇବ ମିନିଟେ ।

କଅଣ କହିବେ ଲୋକେ ? କହନ୍ତୁ ନା କହିବେ ଯା ଅଛେ
ମୁଁ ଜାଣେ ମୁଁ ଆତତାୟୀ, ଏମାନଙ୍କ କଲ୍ୟାଣ ସକାଶେ ।

ଏଇ ଦେଖ ଶୋଇଛନ୍ତି ନାରୀ—ରୂପସୀ ସେ ଅଳପ ବୟସୀ,
ଦାରିଦ୍ର୍ୟ କରିଛନ୍ତି ତାଙ୍କୁ ଦୀନା, ରୁଗ୍ଣା, ରୁକ୍ଷା, ବର୍ଷୀୟସୀ ।

ଭଗବାନ କହୁ ଅପି ତାଙ୍କୁ କେତେ କରନ୍ତି ପ୍ରଣୟ
ପ୍ରଣୟେ ପୋଢ଼ବା ଦୁହେଁ ଦେଖିଥିବେ ସେ କରୁଣାମୟ ।

ରଖିବାକୁ ତାହାଙ୍କୁ ମୁଁ ପ୍ରାଣି-ଯୋଗ୍ୟ ବଞ୍ଚିବା ସୁଖରେ
ଗୋଟିଏ କୁଟୀର ଦେଇ, ରଖି ତାରେ ଅଭାବ ଊର୍ଦ୍ଧ୍ୱରେ;

ଦୁର୍ଭାଗ୍ୟ ସଙ୍ଗତେ ମୁହିଁ ଲଢ଼ି ଲଢ଼ି ହୋଇଲି ଜଖମ
ତାକୁଇ ଖାଇଲି ବେଣୀ, ଯେତେ ମୋର ବ୍ୟର୍ଥତା-ସରମ ।

ଧାଇଁବାର ବାରଦ୍ୱାରେ, ମାଗି ବାତକଣେ ହାତ ପାତ
ଫେରିବାର ମୁଣ୍ଡେ ବୋହି, ବ୍ୟର୍ଥତାର ଲାଞ୍ଛନା ନିହାତ;

ପ୍ରତ୍ୟହ ବଞ୍ଚିବା ଖାଲ୍-ଖା-ହେବ-ର-ଭୟ ସଙ୍ଗେ ଲଢ଼ି
ଭାବି ଭାବି ମୋ ଜୀବନ ତା ଆଗରେ ଯାଉଅଛି ସଢ଼ି ।

ସକଳ ଆଶାର ଦ୍ୱାରେ ହାତ ମାରି ଫେରନ୍ତି ନିରାଶ
ଆଶାର କୁହୁକି ତାକୁ ମୁକ୍ତି ଦେବ ଅଛି ଅବଶେଷ ।

ତା ପାଖେ ଶୋଇଛନ୍ତି ପୁତ୍ର !—ଗର୍ବ ଏହା ସତୀ ଜନନୀର
ମୋର ପ୍ରତିବିମ୍ବ ପରି ଯେତେକ ଦାଗେ ତା କ୍ଷୁଦ୍ର ଶରୀର ।

## ଜୀବନ-କଥା

କର୍ମକ୍ଳାନ୍ତ ଲାଞ୍ଛିତ ମୁଁ ଫେରିଆସେ ଯେବେ ଗୃହଦ୍ୱାରେ
ଛୁଟିଆସେ ସ୍ନେହୀ ଶିଶୁ ମୋହଠାରୁ ଅଶ୍ଳେଷ ଆଶାରେ ।

ଯେତେ ଯେବେ ଆସେ ପାଶେ, ଦେଇ ଦେଇ ଆଶ୍ଳେଷ ଚୁମ୍ବନ
ପ୍ରାଣ ମୋର ଶାନ୍ତ ନୁହେ । କର୍ଣ୍ଣେ ତାର ଦେସଟି ବଚନ ।

ଛୋଟ ଛୋଟ ମୂଢ଼ ପ୍ରଶ୍ନ, ଅକାରଣ ହାସ୍ୟ ଅଶ୍ରୁ ଜଳ
ଥିଲ ଆମ ଦୁଃଖି ଗୃହେ ଏକମାତ୍ର ଆନନ୍ଦ-ସମ୍ବଳ ।

ସେଥୁ ମୋ ରକତୁଁ-ଜାତ ସନ୍ତାନରେ କରବ ବିନାଶ
ଭଗବାନ ସମ୍ମୁଖରେ ଠିଆହୋଇ କହୁବ ନିର୍ଦ୍ଦୋଷ ।

ସବୁ ଶେଷ ହେବା ଅଗ୍ରୁଁ ଥରେ ପୃଚ୍ଛା କରେ ଭଗବାନ
ମିଥ୍ୟାଟିକି ବେଦେ ଶାସ୍ତ୍ରେ ହୋଇଛନ୍ତି ଯା ତବ ଗୁଣ ଗାନ ?

ଶୁଣିଛି ଭକତେ ତୋତେ ବର୍ଣ୍ଣିବାର କରୁଣା-ବାରିଧି
କରୁଣାର କଣା ହେଲେ ନ ପାଇଛି ମୁହିଁ ଏ ଅବଧି ।

ପେଟ ଲାଗି ଯାହାଙ୍କର ନାହିଁ ଚିନ୍ତା ସେ ତୁମ ସ୍ତାବକ
ଦେଉଳ ତୋଳାନ୍ତି ଯେନ୍ହ ଯେତେ ଧନୀ, ଅଢ୍ୟାଗୃହୀ, ଠକ ।

ମତେ ତ ଦେଇନା କିଛି, ଡାକିଲେହେଁ ଯୋଡ଼ ହସ୍ତ ହୋଇ
ସବୁ ଚେଷ୍ଟା ଯାଇଁ ମୋର କରୁଅଛ ନିତ୍ୟ ଧୂଳିଶାୟୀ ।

କୀଟେ ଖାଏ ଭେକ, ଭେକେ ଗିଳେ ସର୍ପ, ମାରେ ତା ମୟୂର,
ମୟୂରେ ମନୁଷ୍ୟ ଖାଏ——ଚନ୍ତା ଏହୁ ତୋ ପୁଣ୍ୟ ସୃଷ୍ଟିର !
ମନୁଷ୍ୟ-ସମାଜେ ଚଳେ ସେହି ନୀତି——ଜଣେ ଅର ଜଣେ
ଧୂଳିଶାୟୀ କରି ତା'ର ନେଲେ ସବୁ, ପଉରୁଷ ମଣେ ।

କାହାର ଅନିଷ୍ଟ ମନେ ଚିନ୍ତା ମଧ୍ୟ କରିନି ଜୀବନେ
ତଥାପି ଘୋଡ଼ାନ୍ତ ଶ୍ୱାନେ ପଛେ ମୋର କହୁ କି କାରଣେ ?
ଦୟା କରୁଣାରେ ଭରି ବିଧାତାର ଏ ଜଗତ ପରି ।
ଭିକ୍ଷା ଦେବା ଥାଉ ତେଣେ, ଭଙ୍ଗା ହୁଏ ମୋ ଅନ୍ନ ଖପରି ।

କା ଆଗେ କହିବି ଦୁଃଖ ; ଅନ୍ୟାୟେ ତ ଗଢ଼ା ଏ ସଂସାର
କିଏ ସେ ପୋଛିବ ଅଶ୍ରୁ ? ଅଶ୍ରୁରେ ତ ଥନଧ ପ୍ରସ୍ତାର ।
ଉପାୟ ନ ଦେଖି ଆଜି କରିବାକୁ ଦୁଃଖ ଅବସାନ,
ଛାଡ଼ି ଘର ତୀର୍ଥ ଖୁଟରେ ଦେଇଅଛି ଆଜ ମୁଁ ଶାଅଶି,

କହିବେ କେ ଧର୍ମବକ୍ତ, ଦୁଃଖ ଭୋଗ ପାପ ଫଳ ସିନା,
ବେଶ୍ କଥା——ପାପ ମୋର କେହିତ ହେଲେ ବୁଝାଇ ଦେଉ ନା ।
ଉନ୍ମୁକ୍ତ ଅକାଶ ତଳେ ନିଶୀଥରେ ହୋଇ ଯୋଡ଼ହସ୍ତ,
ଡାକୁଛି ମୁଁ ବାରମ୍ବାର, "ଭଗବାନ ବୁଝାଇ ସମସ୍ତ ।

କହି ବିନା କିବା ପାପେ ଜୀବନକୁ କଲ ଖଣ୍ଡ ଖଣ୍ଡ
ପ୍ରତିଦାନ ଦେଲ ମୋର ମଧୁସ୍ୱପ୍ନ, ସାଧୁ ଶ୍ରମ ପଣ୍ଡ ।”

ଉତ୍ତର ପା'ଇଲି କାହିଁ ? ଗଣ୍ଡ ଅଶ୍ରୁ ଦୋହଯାଏ ଶୁଖି
ଅନାଦୃତ ଶିଶୁ ପରି ଧରେ ଶଯ୍ୟା ମୁଁ ଅଜନ୍ମ ଦୁଃଖୀ ।

ଭାଗ୍ୟଧର ଯେଉଁ ସବୁ, ତାଙ୍କ କଥା କରି ଅଲୋଚନା,
ପାଇନି କି ମୋ ଜୀବନ୍ତୁଁ ତାଙ୍କଠାରେ ବେଶୀ ପୁଣ୍ୟକଣା ।

ଆଜ ସବୁ—ହସ୍ତ ମୋର, ଶିଥିଳିତ ହୋଇ ଅସିଲଣି
କଟିଯିବ ସବୁ ଯଦି ନିଦ୍ରାଭଙ୍ଗ ହୁଏ କାହିଁ ପୁଣି ।

ଜୀବନର ମାୟା ବଡ଼—ହୁଏ ତ ଏ କରିବେ ଚିତ୍କାର
ଦୁଃଖେ ଲାଞ୍ଛନାରେ ମଧ୍ୟ ଜୀଇବାକୁ କରିବେ ବିଗୁର ।

ଅନିଚ୍ଛୁକ ରୋଗୀ ମୁଖେ ବଳେ ଦେବା ପରି ଅଉଷଧ
ଏ ଦୁହିଁଙ୍କୁ ଦେବି ଅଜ ନିର୍ବିବାଦରେ ମୃତ୍ୟୁ ଆଶୀର୍ବାଦ ।

ବଞ୍ଚିବାର ଲଜ୍ଜା ଦୁଃଖୁ, ଅଶ୍ରୁ ଦିଏ ଜୀବେ ଯେ ମରଣ !
କିଏ ପୁଣି ପାପ ?—ସେ ତ ଦୁଃଖିଜନ ପରମ ଶରଣ !

ଅସ ପ୍ରିୟେ, ଅସ ବତ୍ସ—ଅତି ସ୍ନେହେ ବଧିବି ଦୁହିଁରେ
ଦଣ୍ଡକେ ତ ପାରହେବା ଦୁଃଖମୟ ଜୀବନ ନଦୀରେ ।

ଜୀବନେ ପାଇଲେ ଯାହା ମାନବର ବିଷାକ୍ତ ଉତ୍କଣ୍ଠା
ଜୀବନର ଅପରାହ୍ଣ ଦେଖିବାନା, କିବା ଅଭିଜ୍ଞତା,

ଏଇ ଦେଲି ଖୁର ଧାର, ଶିଶୁ ବେଳେ—ବେଶ୍;ବେଶ୍;ବେଶ୍
ସାବାସ ଶାବାଶ !—ଭଲ୍ଲ' ଜଘନ୍ୟତା ଦଣ୍ଡକରେ ଶେଷ;
ସୁନ୍ଦର ତା ଅଖି ଦୁଇ ଫୁଟିଅସେ—ନାଚେ କୁନ୍ତଳ ଶିର
ନ ବୁଝିବ ସେ ଅଜେ ମୁଁ—ଶେଷ ଭରେ ଦୁଃଖୀ ଜନନୀର ।

ଚୁମ୍ବିଛି ଏ ଯୋଗୁ ଗଲା ଅଗ ପଛ କେତେ ଲକ୍ଷ ବାର
ଏ ପାଖ ସେ ପାଖ ଗଣ୍ଡ, ନମ୍ର ଓଷ୍ଠ—ସୁକୋମଳ ଧାର ।
ଅନାବୃତ ବକ୍ଷ ଏଥୁ—ନିତ୍ୟ ଅଭିସ୍ନାତ ମୋ ଚୁମ୍ବନେ,
ବେଗେ ବେଗେ କେତେ କ୍ଷୀଣ ଅଙ୍ଗ, ଢ଼ଳିପଡେ ଭଙ୍କାଳର କୋଣେ ।
ଖାଲି ସ୍ନେହ କେତେ ଅଜ୍ଞ ବଞ୍ଚାଉଛି ହତଭାଗିନୀରେ
ସାମାନ୍ୟ କୁଟୀର ଖଣ୍ଡେ ନାହିଁ ତାର ବସ୍ତି ମଧ୍ୟରେ ।
ଭବିଷ୍ୟ ବା ଆଶା କାହିଁ?—ଆଜ,ଆଜ ବେଳେ ଦେଇ ଖୁର
ସକଳ ଦୀନତା ତାର କରିଦିଏ କ୍ଷଣକରେ ଦୂର ।

ସନ୍ତାନ—ଶୋଣିତ-ରକ୍ତ ଏଇ ଖୁର ଜନନୀର ଗଳେ
ବସାଇଲି!—ଯାଉଛୁ ତ !—ବେଶ୍ ଯାଏ!—ଶେଷ ଏକାଥରେ
ଯାଅ ଖୁର—ଦେଇ ଫିଙ୍ଗି—ଦୁହିଁଙ୍କର ଶବର ମଝିରେ
ଶୋଇ ଅଲିଙ୍ଗନେ ଧରି, ଠିଆ ହେବ ମରଣର ତୀରେ ।

# ଦ୍ୱନ୍ଦ୍ୱ

ଅଜ୍ଞାନ ଯା କହେ କରନା କରନା
ମନର ତହିଁ ବିଶେଷ ଅନୁରାଗ
ଜବାବ୍ ଦିଏ 'ଇଚ୍ଛା ହେଲା କିପାଁ
ବୁଝାଇ ମତେ ଉତ୍ତର ଦିଅ ଆଗ ।'

କହଇ ଜ୍ଞାନ ପାପରେ ଭରି ତାହା
କହଇ ମନ "ଖାତର ନାହିଁ କରେ
ବିଧାତାଙ୍କୁ ପଚୃବ ଯାଇ ଆଗେ
ପାପକୁ କିପାଁ ମିଠା-ମଧୁର୍ କଲେ ।"

ବୁଝାଏ ଜ୍ଞାନ ନିନ୍ଦା ଦେବେ ଲୋକେ
କହଇ ମନ 'କି ସାଧୁ ସେମାନେ ।'
"ନରକେ ଯିବୁ" କହିଲେ ହସି କହେ
'ଦେଖିବି ମୁହିଁ ସକଳେ ସେ ଥାନେ
ମନର ଜ୍ଞାନର ଏପରି ଟଣାଟଣି
ନିରନ୍ତର ଚାଲିଛି ଫିଟେଣି ଯଣେ
କହିଲେ ଜ୍ଞାନ "ଛି ଛି" ଲାଜପାଇଁ
"ଚମତ୍କାର ।" କହଇ ଆନ ଜଣେ

ଦୁଇର ଦ୍ୱନ୍ଦେ ମୁଁ ହୁଏଁ ଖାଲି ଦଳି,
ଭୁବନ ବନେ ଧାଉଁଛି ଲକ୍ଷ୍ୟହୀନ,
ଶ୍ରେୟଃ ଓ ପ୍ରେୟଃର ତଉଲ ହେଉଁ ହେଉଁ,
ଅସ୍ତପ୍ରାୟ କ୍ଷୁଦ୍ର ଏ ଜୀବନ ।
ବନ୍ୟାଜଳେ ଶୁଖିଲା ପତ୍ର ପରି
ବିଧାତା, ମତେ କଲ ଯେ ଶୂନ୍ୟ-ବଳ,
ବିଚାର ବେଳେ ସାକ୍ଷୀ ହେବେ ହେ ମୋର
ମୋ ମନ, ଜ୍ଞାନ ସମ୍ମୁଖେ ତୁମ୍ଭର ।
ପାତକ ନାହିଁ, ପୁଣ୍ୟ ନାହିଁ ମମ
ମୁଁ ଖାଲି ଏକ ଅନୁଭୂତିର ମାଳା,
ହସ ଓ ଲୁହର ପାପରେ ଦଣ୍ଡିବାକୁ
ରଖିଛ କିହେ ବେତ୍ର, ଆଉ କାରା ?